# କେନ୍ଦୁଝର ଦର୍ପଣ




## ଅରୁଣ ତରୁଣ


ଶିଶୁ ସାହିତ୍ୟ ବିକାଶ ସମିତି

କେନ୍ଦୁଝର

# କେନ୍ଦୁଝର ଦର୍ପଣ

*ରଚନା :*
**ଡକ୍ଟର କୃତ୍ତିବାସ ନାୟକ**
(ଜାତୀୟ ପୁରସ୍କାରପ୍ରାପ୍ତ ଲେଖକ)

*ପ୍ରକାଶକ :*
**'ଅରୁଣ-ତରୁଣ'**
ଶିଶୁ ସାହିତ୍ୟ ବିକାଶ ସମିତି
ଆକାଶବାଣୀ କଲୋନୀ
କେନ୍ଦୁଝର - ୭୫୮୦୦୧

*ମୁଦ୍ରଣ :*
ସଂସାର ପ୍ରେସ, କଟକ-୯

*ପ୍ରଥମ ସଂସ୍କରଣ :*
ବିଷୁବ ମିଳନ, ୧୯୯୭

*ମୂଲ୍ୟ :* **ତିରିଶ ଟଙ୍କା ମାତ୍ର**



**KENDUJHAR DARPAN**
(Hand book of Keonjhar)

*Author :*
**Dr. Kruttibas Nayak**

*Published by :*
**'ARUN-TARUN'**
Akashvani Colony,
Keonjhar - 758001

*Printed at :*
Sansar Press, Cuttack-9

*Price :* **Thirty only**

# କେନ୍ଦୁଝର ଦର୍ପଣ କାହିଁକି ?

ରାଜ୍ୟ କେନ୍ଦୁଝରୀ ନାମଟି ତାର,
ଉତ୍ତ୍ର ଦେଶମଧ୍ୟେ ଅଟଇ ସାର ।

ପ୍ରାଚୀନ ଯୁଗର କବି କେନ୍ଦୁଝରକୁ ଶ୍ରେଷ୍ଠ ରାଜ୍ୟ ଭାବେ ଅଭିହିତ କରିଥିଲେ, ତାର କାରଣ ତ ଅନେକ ଅଛି ; ତେବେ ଏ' ମାଟିତଳେ ଭରି ରହିଛି ଅମୂଲ୍ୟ ରତ୍ନ । ଏକଥାକୁ ସମସ୍ତେ ହୃଦୟଙ୍ଗମ କରି ଭାବୁଛନ୍ତି, ନିକଟ ଭବିଷ୍ୟତରେ କେନ୍ଦୁଝର ହେବ ଜିଲ୍ଲାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ।

କେନ୍ଦୁଝରର ଲଳିତକଳା ତୀର୍ଥ- ଆଜିର ସୀତାବିଞ୍ଜ ଦିନେ ସଭ୍ୟତାର ଆଦ୍ୟ ଝଂକାର ତୋଳିଥିଲା ବୋଲି ଶୁଣାଯାଏ । ଅନେକ ଧର୍ମର ମିଳନ ପୀଠ, ଅସଂଖ୍ୟ କୀର୍ତ୍ତିରାଜିର ମୂକସାକ୍ଷୀ କେନ୍ଦୁଝର, ଆଜି ସଭ୍ୟ ସମାଜର ପୁନଃ ଦୃଷ୍ଟି ଆକର୍ଷଣ କରିପାରିଛି ।

ସମୟ ଥିଲା - ବିଦେଶ ଖବର ଉପରେ, ବିଦେଶର କଳା-ସଂସ୍କୃତି ଓ କୀର୍ତ୍ତିରାଜି ଉପରେ ଜ୍ଞାନ ଥିବା ପ୍ରାର୍ଥୀଙ୍କୁ ଯୋଗ୍ୟ ମନେ କରାଯାଉଥିଲା । ସଂପ୍ରତି ସେ ଚିନ୍ତାଧାରା ପରିବର୍ତ୍ତିତ ହୋଇସାରିଛି । ନିଜ ରାଜ୍ୟ, ନିଜ ଜିଲ୍ଲା ଓ ନିଜ ଅଞ୍ଚଳର ବୈଶିଷ୍ଟ୍ୟ ସଂପର୍କରେ ଏବେ ସମସ୍ତ ପ୍ରତିଯୋଗିତାରେ ପ୍ରଶ୍ନ ପଚରା ଯାଉଛି ।

''କେନ୍ଦୁଝର ଦର୍ପଣ'' ମାଧମରେ କେନ୍ଦୁଝର ସଂପର୍କରେ ବିଭିନ୍ନ ତଥ୍ୟ ଯୋଗାଇ ଦେବାକୁ ମୁଁ ଚେଷ୍ଟା କରିଛି । ଏହି ତଥ୍ୟ ଗୁଡ଼ିକ ବିଭିନ୍ନ ସରକାରୀ ନଥିପତ୍ର , ବ୍ୟକ୍ତି ବିଶେଷଙ୍କ ପ୍ରକାଶିତ ପୁସ୍ତକ ଓ ବିଭିନ୍ନ ସଂସ୍ଥା ଦ୍ୱାରା ପ୍ରକାଶିତ ସ୍ମରଣିକାରୁ ତଥା ମୋର ବ୍ୟକ୍ତିଗତ ଚେଷ୍ଟାରେ ସଂଗୃହୀତ ହୋଇଛି । ଏଥିପାଇଁ ମୁଁ କେନ୍ଦୁଝରର ବହୁ ବରିଷ୍ଠ ତଥା ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ସହାୟତା ନେଇଛି । ପାଣ୍ଡୁଲିପିକୁ ପାଠ କରି ଆବଶ୍ୟକ ପରାମର୍ଶ ଦେଇଛନ୍ତି - ପଣ୍ଡିତ ମଦନ ମୋହନ ମିଶ୍ର ଏବଂ ଶ୍ରୀ ରତ୍ନାକରର ମହାନ୍ତ । ପୁସ୍ତକ ପାଇଁ ଫଟୋଗୁଡ଼ିକ ଯୋଗାଇ ଦେଇଛନ୍ତି - ଶ୍ରଦ୍ଧେୟ ଟୁନାବାବୁ । ଏମାନଙ୍କ ନିକଟରେ ମୁଁ କୃତଜ୍ଞତା ଜଣାଉଛି ।

ପୂର୍ବରୁ ''ଆଜିର କୋରାପୁଟ'' ଓ ''ସମ୍ବଲପୁର ପ୍ରତିଭା'' ଯଥେଷ୍ଟ ଲୋକପ୍ରିୟତା ହାସଲ କରିଥିଲା । ଉକ୍ତ ପୁସ୍ତକଟି ସାଧାରଣ ପାଠକ, ପ୍ରତିଯୋଗୀ ଓ ଶ୍ରଦ୍ଧାଳୁ ବ୍ୟକ୍ତିଙ୍କର ଉପଯୁକ୍ତ ସମୟରେ କାମରେ ଲାଗିପାରିଲେ, ମୋ ଶ୍ରମ ସାର୍ଥକ ହେବ ।

ତଥ୍ୟ ସର୍ବଦା ପରିବର୍ତ୍ତନଶୀଳ । ଯଦି କୌଣସି ତ୍ରୁଟି ପ୍ରିୟ ପାଠକଙ୍କ ଦୃଷ୍ଟିରେ ପଡ଼େ, ମୋତେ ଦୟାକରି ଜଣାଇଲେ, ମୁଁ ନମ୍ରତାର ସହିତ ପରବର୍ତ୍ତୀ ସଂସ୍କରଣରେ ତା'ର ପରିବର୍ତ୍ତନ କରିଦେବି ।

ବିନୀତ ଲେଖକ
କୃତ୍ତିବାସ ନାୟକ

**ଶ୍ରୀ ବେଣୁଧର ମିଶ୍ର**
ଜିଲାପାଳ, କେନ୍ଦୁଝର




## ଶୁଭକାମନା

ଡକ୍ଟର କୃତ୍ତିବାସ ନାୟକଙ୍କ ଲିଖିତ **''କେନ୍ଦୁଝର ଦର୍ପଣ''** ପୁସ୍ତକଟି ଦେଖିବାର ସୁଯୋଗ ଲାଭ କଲି ।

ମୋ ଜିଲା ସଂପର୍କରେ ବିଭିନ୍ନ ତଥ୍ୟ ଏଥିରେ ସ୍ଥାନ ପାଇଛି, ଯାହାକି ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ଠାରୁ ଆରମ୍ଭ କରି ବିଭିନ୍ନ ସ୍ତରର ଜିଜ୍ଞାସୁ ବ୍ୟକ୍ତିଙ୍କର କାମରେ ଆସିବ ।

ପୁସ୍ତକଟିର ବହୁଳ ପ୍ରଚାର ଓ ପ୍ରସାର କାମନା କରୁଛି ।

କେନ୍ଦୁଝର
୧୮ମାର୍ଚ୍ଚ, ୧୯୯୭

**ବେଣୁଧର ମିଶ୍ର**
(ଜିଲାପାଳ)

# କେନ୍ଦୁଝର ଦର୍ପଣ

## ଏଥିରେ ସ୍ଥାନ ପାଇଛି

ପୃଷ୍ଠା

* *

# କେନ୍ଦୁଝର ଜିଲ୍ଲାର ପରିଚୟ

ଭାରତର ପ୍ରାଚୀନ ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରେ କେନ୍ଦୁଝର ରାଜ୍ୟ ଥିଲା ଅନ୍ୟତମ । ଏହି ରାଜ୍ୟର ନାମକରଣ ସମ୍ପର୍କରେ ବିଭିନ୍ନ ମତପ୍ରକାଶ ପାଇଥାଏ, ଯଥା—ପଣ୍ଡିତମାନଙ୍କ ମତରେ କେନ୍ଦୁଝରର ନାମ ବୌଦ୍ଧଯୁଗରେ ଥିଲା—କେନ୍ଦ୍ର-ଜହ୍ୱର । ଜହ୍ୱର ଅର୍ଥ—ଜ୍ଞାନ । କେନ୍ଦ୍ର ଜହ୍ୱରର ପରବର୍ତ୍ତୀ ଅପଭ୍ରଂଶ ନାମ ବର୍ତ୍ତମାନ ହୋଇଛି 'କେନ୍ଦୁଝର' । କେନ୍ଦୁଝର ରାଜ୍ୟ ଗଠନ ପୂର୍ବରୁ ଭୂୟାଁମାନେ ଦେଖିଥିଲେ—ଗୋଟାଏ କେନ୍ଦୁଗଛ ମୂଳରୁ ଝରଣାଟିଏ ବହିଯାଉଛି । ସେଇଠି ଗୋଟାଏ ଶିଆଳ, ଗୋଟାଏ ଶକ୍ତିଶାଳୀ ହେଟାବାଘକୁ ମାଡ଼ି ବସିଛି । ଭୂୟାଁମାନେ ଏ' ଅପୂର୍ବ ଘଟଣା ଦେଖି ଚକିତ ହୋଇଗଲେ । ସେମାନେ ଭାବିଲେ, "ଏ' ହେଉଛି ଏହି ମାଟିର କରାମତି । ତେଣୁ ଏଇଠି ଗଡ଼ ନିର୍ମାଣ କଲେ ଦୁର୍ବଳ ମଧ୍ୟ ସବଳକୁ ଜିତିପାରି-ପାରିବ ।" ତାହାହିଁ ହେଲା । ସ୍ଥାନର ଅବସ୍ଥିତି ଅନୁସାରେ ରାଜ୍ୟର ନାମକରଣ ହେଲା—କେନ୍ଦୁଝର । ଏହା କିମ୍ବଦନ୍ତୀର କଥା ।

'କ'ର ଅର୍ଥ ମସ୍ତକ + ଇନ୍ଦୁ = କେନ୍ଦୁ, ଅର୍ଥାତ୍—ଯାହାର ମସ୍ତକରେ ଇନ୍ଦୁ ଶୋଭାପାଏ, ସିଏ କି ଶିବ । ତାଙ୍କ ନିକଟରେ ଝର ପ୍ରବାହିତ ହେଉଥିବାରୁ ଏ' ସ୍ଥାନର ନାମ କେନ୍ଦୁଝର ହୋଇଛି । ଏହି ମତଟିକୁ ଅଧିକାଂଶ ପଣ୍ଡିତ ଗ୍ରହଣ କରିବାକୁ ବାଧ୍ୟ ହୋଇଥାନ୍ତି । କାରଣ ପୁଣ୍ୟତୋୟା ବୈତରଣୀର ଉତ୍ପତ୍ତିସ୍ଥଳ ହେଉଛି—କେନ୍ଦୁଝର । କେନ୍ଦୁଝରରେ ମୁଖ୍ୟ ଦେବତା ଭାବେ ମହାଦେବ ହିଁ ପୂଜା ପାଆନ୍ତି । ବୈତରଣୀ କୂଳେକୂଳେ ବ୍ରହ୍ମେଶ୍ୱରଙ୍କ ଠାରୁ ଆରମ୍ଭ କରି ଆଖଣ୍ଡଳେଶ୍ୱରଙ୍କ ପର୍ଯ୍ୟନ୍ତ ଅସଂଖ୍ୟ ଶିବଲିଙ୍ଗ ବିରାଜିତ । ତେଣୁ ଏହି ନାମକରଣ ଯଥାର୍ଥ ମନେହୁଏ ।

ଏହି ନାମକରଣ ସତ୍ତ୍ୱେ ଆମକୁ ପୁନଶ୍ଚ ଚିନ୍ତା କରିବାକୁ ପଡ଼େ ଯେ ଝାଡ଼ ବା ଝାଡ୍ ଶବ୍ଦର ଅର୍ଥ—ବଣ ବା ଜଙ୍ଗଲ । ବିଶ୍ୱାସ କରାଯାଏ—ଏହି ରାଜ୍ୟର ଗଡ଼ ନିର୍ମାଣ

ସ୍ଥାନଟି କେବେ କେନ୍ଦୁଗଛପୂର୍ଣ୍ଣ ବଣ ଥିଲା । ତେଣୁ ଏହି ସ୍ଥାନଟି କେନ୍ଦୁଝାଡ଼ ବା କେନ୍ଦୁଝାର ଭାବେ ପରିଚିତ ଥିଲା । ପରବର୍ତ୍ତୀ କାଳରେ ଏହା କେନ୍ଦୁଝରରେ ପରିବର୍ତ୍ତିତ ହୋଇଥାଇପାରେ । ଏହିସବୁ ମତ ଯାହାହେଉ ନା କାହିଁକି, ଇଂରେଜମାନେ ଏହି ରାଜ୍ୟକୁ ଇଂରାଜୀରେ KEONJHAR ଭାବରେ ସମଗ୍ର ଦେଶରେ ପରିଚିତ କରାଇଛନ୍ତି । କେତେକ ଏହି ରାଜ୍ୟକୁ ଶ୍ରଦ୍ଧାରେ 'କେନ୍ଦୁଝରା' ନାମରେ ଅଭିହିତ କରିଥା'ନ୍ତି ।

ଭାରତ ସ୍ୱାଧୀନତା ଲାଭ କଲା ପରେ ୧୯୪୮ ମସିହା ଜାନୁଆରୀ ମାସ ୧ ତାରିଖ ଦିନ ଯେଉଁ ୨୫ଟି ଦେଶୀୟ ରାଜ୍ୟ ଓଡ଼ିଶା ପ୍ରଦେଶରେ ମିଶିଥିଲେ, ସେମାନଙ୍କ ମଧ୍ୟରେ କେନ୍ଦୁଝର ରାଜ୍ୟ ଥିଲା ଅନ୍ୟତମ । ତତ୍କାଳୀନ କେନ୍ଦୁଝର ରାଜା ବଳଭଦ୍ରନାରାୟଣ ଭଞ୍ଜଦେବ ପ୍ରଜାମାନଙ୍କର ହିତ ଦୃଷ୍ଟିରୁ ନିଜ ରାଜ୍ୟକୁ ଓଡ଼ିଶା ରାଜ୍ୟର ଅବିଚ୍ଛେଦ୍ୟ ଅଙ୍ଗ ଭାବରେ ଲୀନ କରିଦେଇଥିଲେ । ଆଧୁନିକ ଓଡ଼ିଶାର ବିକାଶ ସଙ୍ଗେ କେନ୍ଦୁଝର ଜିଲ୍ଲାର ପ୍ରଭୂତ ବିକାଶ ସାଧିତ ହେବା ଫଳରେ ଓଡ଼ିଶାର ମାନଚିତ୍ରରେ କେନ୍ଦୁଝର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିଛି ।



# କେନ୍ଦୁଝରର ଅବସ୍ଥିତି

ଆଧୁନିକ କେନ୍ଦୁଝର ଜିଲ୍ଲା ଭାରତ ମାନଚିତ୍ରର ୨୧°୧୧′ ଉତ୍ତର ଅକ୍ଷାଂଶରୁ ୨୨°୧୦′ ଉତ୍ତର ଅକ୍ଷାଂଶ ଏବଂ ୮୫°୧୧′ ପୂର୍ବରୁ ୮୬°୨୨′ ପୂର୍ବ ଦ୍ରାଘିମାରେ ଅବସ୍ଥିତ । ଏହାର ଆକୃତି ଗୋଟିଏ ବୃହତ୍ ଶଙ୍ଖସଦୃଶ । ଏହି ଜିଲ୍ଲା ଦକ୍ଷିଣରେ ଯାଜପୁର ଜିଲ୍ଲା ସୀମାରେ ଅବସ୍ଥିତ ଜରଦା ଠାରୁ ପଶ୍ଚିମରେ ବିହାର ରାଜ୍ୟ ସୀମା କିରିବୁରୁ ପର୍ଯ୍ୟନ୍ତ ବ୍ୟାପିଛି । ଉତ୍ତର ଦିଗରେ ସିଂହଭୂମି (ବିହାର) ଓ ମୟୂରଭଞ୍ଜ ଜିଲ୍ଲା ଏବଂ ପୂର୍ବରେ ଭଦ୍ରକ ଜିଲ୍ଲା ଓ ପଶ୍ଚିମରେ ଅନୁଗୁଳ ଓ ସୁନ୍ଦରଗଡ଼ ଜିଲ୍ଲା ଅବସ୍ଥିତ । ବହୁ ନଦନଦୀ ଓ ବଣ ପାହାଡ଼ଦେଇ ଏହି ସୁବୃହତ୍ କେନ୍ଦୁଝର ଜିଲ୍ଲାକୁ ମୋଟାମୋଟି ପ୍ରାକୃତିକ ଅବସ୍ଥିତି ଦୃଷ୍ଟିରୁ ତିନିଭାଗରେ ବିଭକ୍ତ କରାଯାଏ । ଯଥା— (୧) ସମତଳ ଅଞ୍ଚଳ (ଆନନ୍ଦପୁର ସବ୍‌ଡିଭିଜନ୍), (୨) ପାର୍ବତ୍ୟ ଅଞ୍ଚଳ (ସଦର ସବ୍‌ଡିଭିଜନ), (୩) ପାର୍ବତ୍ୟ ସମତଳ ଅଞ୍ଚଳ, (ଚମ୍ପୁଆ ସବ୍‌ଡିଭିଜନ) ସଦର କେନ୍ଦୁଝର ଏବଂ ଚମ୍ପୁଆ ସବ୍‌ଡିଭିଜନ୍‌କୁ ପୁନଶ୍ଚ ଉପର-କେନ୍ଦୁଝର ଏବଂ ଆନନ୍ଦପୁର ସବ୍‌ଡିଭିଜନକୁ ତଳ-କେନ୍ଦୁଝର କୁହାଯାଏ ।

ଭୂତତ୍ତ୍ୱବିତ୍‌ମାନଙ୍କ ମତ ଅନୁସାରେ ଭୂଗର୍ଭର ଆଭ୍ୟନ୍ତରୀଣ ପ୍ରଦେଶ ଉତ୍ତପ୍ତ ଅବସ୍ଥାରେ ରହିଥିବାରୁ କୌଣସି ଏକ ଭୂକମ୍ପନ ଫଳରେ ତରଳ ଧାତବ ପଦାର୍ଥ ଭୂପୃଷ୍ଠକୁ ଆସି କେନ୍ଦୁଝର ଅଞ୍ଚଳକୁ ପ୍ରକୃତିର ଗନ୍ତାଘର ଭାବେ ଗଢ଼ି ତୋଳିଛି । ପ୍ରାୟ ପଚିଶହଜାର ବର୍ଷ ହେଲା ଏହି ଅଞ୍ଚଳ ମଣିଷ ବାସ-ଉପଯୋଗୀ ହୋଇଥିବା ଅନୁମାନ କରାଯାଏ । ଖିଚିଂମଣ୍ଡଳର ଆଦିମ ଅଧିବାସୀମାନେ ବ୍ୟବହାର କରୁଥିବା ପ୍ରାଚୀନ ଯୁଗର ଅସ୍ତ୍ରଶସ୍ତ୍ରଗୁଡ଼ିକ ଏସିଆ, ୟୁରୋପ ଓ ଆଫ୍ରିକା ମହାଦେଶର ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ରଠାରୁ ଅଧିକ ଉନ୍ନତ ଓ ମସୃଣ ଥିବାରୁ ଏଭଳି ଅନୁମାନ କରାଯାଏ ।

ଆଧୁନିକ ଭାରତର ଛଅ ନମ୍ବର ଜାତୀୟ ରାଜପଥ (କଲିକତା-ବମ୍ବେ) ଉପରେ ଅର୍ଥାତ୍ କଲିକତାଠାରୁ ୩୫୦ କିଲୋମିଟର ଦୂରରେ ଏବଂ ଏଗାର ନମ୍ବର ରାଜ୍ୟ ରାଜପଥ (କଟକ-ରାଉରକେଲା) ଉପରେ ଅର୍ଥାତ୍ କଟକଠାରୁ ୨୦୦ କିଲୋମିଟର ଦୂରରେ କେନ୍ଦୁଝର ସହର ଅବସ୍ଥିତ ।

କେନ୍ଦୁଝର ଜିଲାର ଆୟତନ ୮,୩୧,୦୦୦ ହେକ୍ଟର—ସର୍ଭେ ଅଫ୍ ଇଣ୍ଡିଆ ରେକର୍ଡ଼ ଅନୁସାରେ ୮୩୦୩ ବର୍ଗ. କି. ମି. । ଏହି ଅଞ୍ଚଳର ମାଟିର ରଙ୍ଗ ମୁଖ୍ୟତଃ ଲାଲ, ଈଷତ୍ ଲାଲ ଏବଂ କଳା । ଏହା ଅଧିକ ଅମ୍ଳଯୁକ୍ତ, ବାଲୁକା, ଦାନାଯୁକ୍ତ ଏବଂ ସ୍ୱଳ୍ପ ଉର୍ବର । ଏଠାରେ ବାର୍ଷିକ ହାରାହାରି ବୃଷ୍ଟିପାତ ୧୫୩୫ ମିଲିଲିଟର ହେଉଥିବା ବେଳେ ସର୍ବୋଚ୍ଚ ଏବଂ ସର୍ବନିମ୍ନ ତାପମାତ୍ରା ଯଥାକ୍ରମେ ୩୭° ଏବଂ ୧୧° ସେଣ୍ଟିଗ୍ରେଡ୍ ହୋଇଥାଏ । ଏହାର ଉଷ୍ମ ଏବଂ ଆର୍ଦ୍ର ଜଳବାୟୁ ଯୋଗୁଁ ଏଠାରେ ଘନ ଅରଣ୍ୟ ଓ ସବୁଜ ପରିବେଶ ଘେରି ରହିଛି ।

କେନ୍ଦୁଝର ଜିଲାର ଆନନ୍ଦପୁର ଓ ସଦର ଉପଖଣ୍ଡର ବିସ୍ତୀର୍ଣ୍ଣ ଅଞ୍ଚଳ ସମତଳ ହୋଇଥିଲେହେଁ ଏହାର ପଶ୍ଚିମାଞ୍ଚଳ ଘନ ଅରଣ୍ୟ ଓ ପର୍ବତଦ୍ୱାରା ବେଷ୍ଟିତ । ଜିଲାର ଉଚ୍ଚତମ ପର୍ବତଗୁଡ଼ିକ ମଧ୍ୟରୁ ଗନ୍ଧମାର୍ଦ୍ଦନ (୧୦୭୨ ମିଟର), ମାଙ୍କଡ଼ନାଚ୍ଚ (୧୧୧୭ ମିଟର), ଗୋନାସିକା (୯୮୧ ମିଟର) ଏବଂ ଠାକୁରାଣୀ (୯୧୮ ମିଟର) ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ଏହି ଜିଲାର ଜଳରାଶି ମୁଖ୍ୟତଃ ବୈତରଣୀ ଓ ତାର ଉପନଦୀମାନଙ୍କ ଦ୍ୱାରା ନିୟନ୍ତ୍ରିତ ।

କେନ୍ଦୁଝର ଜିଲାରେ ଓଡ଼ିଶାର ସର୍ବପୁରାତନ ରୂପାନ୍ତରିତ ଶିଳା (୩୨୦୦ ନିୟୁତବର୍ଷ) ଚମ୍ପୁଆ ଅଞ୍ଚଳରେ ମିଳେ । କେନ୍ଦୁଝରର ବିସ୍ତୀର୍ଣ୍ଣ ଅଞ୍ଚଳରେ ରପ୍ତାନି-ଯୋଗ୍ୟ ଗ୍ରାନାଇଟ୍ ଓ ଡୋମାଇଟ୍ ପଥର ଗଚ୍ଛିତ ଅଛି । ବିଭିନ୍ନ ଖଣିଜ ସମ୍ପଦରେ ପରିପୂର୍ଣ୍ଣ ଏହି ଜିଲା ଦିନେ ଶିଳ୍ପ ମାନଚିତ୍ରରେ ଏକ ଗୌରବମୟ ସ୍ଥାନ ଅଧିକାର କରିବ ବୋଲି ଆଶା କରାଯାଏ ।

ବି.ଦ୍ର.—କେନ୍ଦୁଝରର ଖଣି-ଖାଦାନ ବିଭାଗରେ ଏହି ସମ୍ପର୍କରେ ଅଧିକ ଆଲୋଚନା କରାଯାଇଛି ।



# କେନ୍ଦୁଝରର ସଂକ୍ଷିପ୍ତ ଇତିହାସ

ଭାରତର ପ୍ରାଚୀନ ଶାସ୍ତ୍ର ମହାଭାରତରୁ ଜଣାଯାଏ ଯେ, ଖ୍ରୀ. ପୂ. ୩୧୦୦ ପୂର୍ବରୁ କେନ୍ଦୁଝର ରାଜ୍ୟ କେତେବେଳେ କଳିଙ୍ଗ ଓ କେତେବେଳେ ଉତ୍କଳ ରାଜ୍ୟର ଅଂଶବିଶେଷ ହୋଇ ଦୁର୍ଦ୍ଧର୍ଷ ବନଗିରିବାସୀଙ୍କ ଦ୍ୱାରା ଶାସିତ ହେଉଥିଲା । ବୈତରଣୀ ନଦୀର ଦକ୍ଷିଣପାର୍ଶ୍ୱରେ ଅବସ୍ଥିତ ମତ୍ସ୍ୟଦେଶର ପ୍ରାଚୀନ ହସ୍ତିନା, କଇନ୍ତା, ବାରୁଣା, ଯମପ୍ରସ୍ଥ ଓ ଇନ୍ଦ୍ରପ୍ରସ୍ଥ ନାମକ ପାଞ୍ଚୋଟି ଗ୍ରାମ ଅଦ୍ୟାବଧି କେନ୍ଦୁଝରର ଚମ୍ପୁଆ ନିକଟରେ ବିଦ୍ୟମାନ । ବିଶ୍ୱାସ କରାଯାଏ—ଦ୍ୱାପର ଯୁଗର ମଗଧ ଓ ମତ୍ସ୍ୟ ଦେଶଦ୍ୱୟ କିଛିକାଳ ପାଇଁ ମହାଭାରତର ବିରାଟ ରାଜାଙ୍କ ଦ୍ୱାରା ଶାସିତ ହୋଇଥିଲା । ପରବର୍ତ୍ତୀ କାଳରେ ଏହା ଖିଚିଂ ମଣ୍ଡଳ ନାମରେ ଅଭିହିତ ହୋଇ ଦ୍ୱାଦଶ ଶତାବ୍ଦୀରେ ସ୍ୱତନ୍ତ୍ର ଦୁଇଟି ରାଜ୍ୟ, ଯଥା—ମୟୂରଭଞ୍ଜ ଓ କେନ୍ଦୁଝର ଭାବେ ନାମିତ ହୋଇଥିଲା ।

ପ୍ରାଚୀନ କାଳରୁ ନିଜସ୍ୱ ପ୍ରାକୃତିକ ସପଦ, ପୌରାଣିକ ଆଖ୍ୟାନ ଓ ଐତିହାସିକ ତଥ୍ୟରେ କେନ୍ଦୁଝର ମାଟି ଗୌରବମୟ ସ୍ଥାନ ଗ୍ରହଣ କରିଆସିଛି । ଏହା କଳିଙ୍ଗ ରାଜ୍ୟର ଗହୃଗର୍ଭ ଅଞ୍ଚଳ ଭାବରେ ପରିଚିତ ହୋଇ ରହିଥିଲା ।

ମହାଭାରତ ଯୁଗରେ କେନ୍ଦୁଝର ପୁଣି କୋଶଳ ରାଜ୍ୟର ଅନ୍ତର୍ଗତ ଥିବା କଥା କେତେକ ମତପ୍ରକାଶ କରିଥା'ନ୍ତି । ତେଣୁ ରାଜ୍ୟର ଆରାଧ୍ୟ ଦେବତା କୁଶଳେଶ୍ୱର ବା କୋଶଳେଶ୍ୱର ମହାଦେବ ହୋଇଥାଇପାରନ୍ତି । ସେହି ନଗର ପାର୍ଶ୍ୱରେ ଥିବା ନଦୀର ନାମ ମଧ୍ୟ କୁଶଭଦ୍ରା ନାମରେ ନାମିତ ହୋଇରହିଛି । ବିଭିନ୍ନ ସମୟରେ କେନ୍ଦୁଝରର ସୀମା ଓ ନାମ ପରିବର୍ତ୍ତିନ ହେବା ସ୍ୱାଭାବିକ କଥା ।

କେନ୍ଦୁଝରର ଇତିହାସ ଅତ୍ୟନ୍ତ ପ୍ରାଚୀନ । କେନ୍ଦୁଝରର ବିଭିନ୍ନ ସ୍ଥାନରୁ ପ୍ରାପ୍ତ ପ୍ରସ୍ତର ନିର୍ମିତ ଅସ୍ତ୍ରଶସ୍ତ୍ର ଏହାର ପ୍ରମାଣ ଯୋଗାଇଥାଏ । ଚମ୍ପୁଆ, ଜଗନ୍ନାଥପୁର

ଓ ରାମଲା ଗ୍ରାମରୁ ସଂଗୃହ କରାଯାଇଥିବା ପ୍ରସ୍ତର ନିର୍ମିତ ଅସ୍ତ୍ରଶସ୍ତ୍ର ଉଭୟ ପ୍ରାଚୀନ-ପ୍ରସ୍ତର ଓ ମଧ୍ୟପ୍ରସ୍ତର ଯୁଗୀୟ ବୋଲି ପ୍ରମାଣିତ ହୋଇସାରିଛି । ବୈତରଣୀ ନଦୀ ତୀରରେ ଅବସ୍ଥିତ ରାଇପୁର ପାଟଣା ଓ ଉଦୟପୁରରେ ନୂତନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ମଧ୍ୟ ଉପଲବ୍ଧ ହୋଇଅଛି । ଠାକୁରାଣୀ ପର୍ବତ ଓ ସୀତାନଦୀ କୂଳରେ ଅବସ୍ଥିତ ତାଙ୍ଗୁଆପୋସି ଗ୍ରାମ ନିକଟରୁ ମଧ୍ୟ ନୂତନପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ପ୍ରାପ୍ତ ହୋଇଅଛି । ବିଶ୍ୱାସ କରାଯାଏ—ଭୂୟାଁ ଓ ଜୁଆଙ୍ଗ ନାମକ ଦୁଇଟି ପ୍ରାଚୀନ ସମ୍ପ୍ରଦାୟ ଏହି କେନ୍ଦୁଝରର ବଣପାହାଡ଼ରେ ସେହି ପ୍ରସ୍ତର ଯୁଗରୁ ବସବାସ କରିଆସୁଛନ୍ତି ।

କେନ୍ଦୁଝରର ଅସନପାଟ ଅଞ୍ଚଳରୁ ପ୍ରାପ୍ତ ଶିଳାଲିପିରେ ନାଗବଂଶୀୟ ରାଜା ଶତ୍ରୁଭଞ୍ଜଙ୍କର ପ୍ରଶସ୍ତି ଗାନ କରାଯାଇଛି । ଏଥିରୁ ଜଣାପଡ଼େ ଯେ, କେନ୍ଦୁଝର ତୃତୀୟ ଓ ଚତୁର୍ଥ ଶତାବ୍ଦୀ ବେଳକୁ ବିନ୍ଧ୍ୟାଟବୀ ରାଜ୍ୟ ନାମରେ ପରିଚିତ ଥିଲା କିମ୍ବା ଆଟବିକ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ।

ପୁନଶ୍ଚ କେନ୍ଦୁଝରର ସୀତାବିଞ୍ଜ ଠାରୁ ପ୍ରାପ୍ତ କୁଶାଣ ମୁଦ୍ରାରୁ ପ୍ରମାଣିତ ହୁଏ ଯେ, ଖ୍ରୀଷ୍ଟିୟ ପ୍ରଥମ-ଦ୍ୱିତୀୟ ଶତକରେ କେନ୍ଦୁଝର କୁଶାଣ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ।

ନାଗବଂଶୀୟ ରାଜାମାନେ ପରବର୍ତ୍ତୀ କାଳରେ ଆଦିଭଞ୍ଜବଂଶୀୟ ଭାବରେ ପରିଚିତ ହୋଇ ଅଖଣ୍ଡ ଖିଚିଂମଣ୍ଡଳକୁ ଶାସନ କରୁଥିଲେ । ସେତେବେଳେ ଆଜିର ମୟୂରଭଞ୍ଜ, କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲାର କେତେକ ଅଂଶକୁ ନେଇ ଏହି ଖିଚିଂ-ମଣ୍ଡଳ ଗଠିତ ହୋଇଥିଲା । ସମ୍ଭବତଃ ସମଗ୍ର କେନ୍ଦୁଝର ଅଞ୍ଚଳଟି ଦକ୍ଷିଣ ଖିଚିଂ ମଣ୍ଡଳରେ ଥିଲା । ତେବେ ସ୍ୱତନ୍ତ୍ର କେନ୍ଦୁଝର ରାଜ୍ୟଟି କେବେ ତାହାଦ୍ୱାରା ଓ କେଉଁ ପରିସ୍ଥିତିରେ ସୃଷ୍ଟି ହୋଇଥିଲା, ସେ ସମ୍ପର୍କରେ ଅନେକ ପରସ୍ପର ବିରୋଧୀ ତଥ୍ୟ ଉପଲବ୍ଧ ହୁଏ । 'ଭଞ୍ଜବଂଶ ମାଳିକାରୁ ଜଣାଯାଏ, "ଆଦିଭଞ୍ଜ ସର୍ବଶ୍ରେଷ୍ଠ ହୋଇ ଆଦିପୁର ଯେନ ପଞ୍ଚପୀଢ଼ିରେ ରାଜାଧିରାଜା ମହାରାଜା ରାବେ ଅନେକ କୀର୍ତ୍ତି କରିଥିଲେ । ତାଙ୍କର ସାନ ଭାଇ ଜ୍ୟୋତିଭଞ୍ଜ ଭ୍ରମରବରବାବୁଙ୍କୁ ସାବୁଡ଼ି ଦେଶା-ମାନ ରୈଲାଇ ନେଇ ପର୍ବତରେ ଲୁଚାଇ ରଖିଲେ । ଊନବର୍ଷ ମେଳି ପରେ ଜ୍ୟୋତିପୁରରେ ରାଜା କରାଇଲେ ।" × × × ସେହିଦିନଠାରୁ କେନ୍ଦୁଝରରେ ସୂର୍ଯ୍ୟବଂଶୀମାନେ ଶାସନ କଲେ । ଏ' ସମ୍ପର୍କରେ କେନ୍ଦୁଝରରେ ରାଜବଂଶ ପର୍ଯ୍ୟାୟରେ ସବିଶେଷ ବିବରଣୀ ବର୍ଣ୍ଣନା କରାଯାଇଛି ।

ଆକବରଙ୍କ ଶାସନ କାଳରେ କେନ୍ଦୁଝର ସମେତ ଅନ୍ୟ ଗଡ଼ଜାତ ରାଜ୍ୟର ଶାସକମାନଙ୍କୁ ଯଦିଓ 'ରାଜା' ପଦବୀ ବ୍ୟବହାର କରିବାକୁ ସୁଯୋଗ ମିଳିଥିଲା, ତଥାପି ସେମାନେ ସରକାରୀ କାଗଜପତ୍ରରେ ଜଣେ ଜଣେ 'ଜମିଦାର' ପଦ ଦ୍ୱାରା

ସୃଷ୍ଟି ହେଉଥିଲେ । କେନ୍ଦୁଝର ଜମିଦାରଙ୍କ ଅଧୀନରେ ମୋଟ ୧୬ଟି ଜମିଦାରୀ ଓ ୫୬ଟି କର ରହିଥିଲା । ଢେଙ୍କାନାଳ, ସୁକିନ୍ଦା, କଣ୍ଡାଝର, ଡୋଲଗଡ଼, ରଗଡ଼ି, ପଞ୍ଚିମକୋଟ ପ୍ରଭୃତି ଜମିଦାରୀଗୁଡ଼ିକ ଏହି କେନ୍ଦୁଝରର ଅନ୍ତର୍ଭୁକ୍ତ ଥିଲା । ଏହି ଜମିଦାରୀଗୁଡ଼ିକ କ୍ରମଶଃ କେନ୍ଦୁଝର ଜମିଦାରୀରୁ ବିଚ୍ଛିନ୍ନ ହୋଇଯାଇଥିଲା । କେନ୍ଦୁଝରର ଭଞ୍ଜବଂଶୀୟ ରାଜାମାନେ ଖୋର୍ଦ୍ଧାର ଗଜପତିଙ୍କ ସହିତ ସମ୍ପର୍କ ରଖିଥିଲେ । ଏହି ସମ୍ପର୍କର ଘନିଷ୍ଠତା ରାଜା ଗୋବିନ୍ଦଭଞ୍ଜଙ୍କ ସମୟରେ ଚରମ ସୀମାରେ ପହଞ୍ଚିଥିଲା, ତାହା ରାଜା ଶିବନାରାୟଣଙ୍କ ସମୟ ପର୍ଯ୍ୟନ୍ତ ମଧ୍ୟ ଅବ୍ୟାହତ ରହିଥିଲା ।

ଶିବନାରାୟଣଙ୍କ ପୁତ୍ର ଲକ୍ଷ୍ମୀନାରାୟଣ ଭଞ୍ଜ (୧୬୫୪-୧୬୮୮ ମଧ୍ୟରେ) ଜଣେ ପ୍ରତାପଶାଳୀ ରାଜା ଥିଲେ । ତାଙ୍କ ସମୟରେ କେନ୍ଦୁଝରର ରାଷ୍ଟ୍ରଦେବତା ମହାପ୍ରଭୁ ଶ୍ରୀ ଶ୍ରୀ ବଳଦେବ ଜୀଉଙ୍କ ମନ୍ଦିର ନିର୍ମିତ ହୋଇଥିଲା । ଗୋନାସିକାଠାରେ ପବିତ୍ର ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ତୀର୍ଥସ୍ଥାନରେ ପରିଣତ ହୋଇଥିଲା ।

ରାଜା ଜନାର୍ଦ୍ଦନ ନାରାୟଣ ଭଞ୍ଜଙ୍କ (୧୭୯୨-୧୮୩୨) ସମୟରେ ସମଗ୍ର ଓଡ଼ିଶା ଇଂରେଜମାନଙ୍କ ହସ୍ତଗତ ହୋଇଗଲା । ଫଳରେ କେନ୍ଦୁଝରରେ ଇଷ୍ଟଇଣ୍ଡିଆ କମ୍ପାନୀ ଶାସନ ଚାଲିଲା । କେନ୍ଦୁଝର ରାଜା କମ୍ପାନୀକୁ ୧୨ ହଜାର କାହାଣ କଉଡ଼ି ବାର୍ଷିକ କର ଆକାରରେ ଧନ କିସ୍ତିରେ ପ୍ରଦାନ କଲେ ।

ସିପାହୀ ବିଦ୍ରୋହ କାଳରେ ତତ୍କାଳୀନ ରାଜା ଗଦାଧର ଭଞ୍ଜ (୧୮୩୨-୧୮୬୧) ଇଂରେଜମାନଙ୍କୁ ସାହାଯ୍ୟ କରିଥିଲେ । ଫଳରେ ତାଙ୍କୁ ମହାରାଜା ଉପାଧି ପ୍ରଦାନ କରାଯାଇଥିଲା । ତାଙ୍କର ବାର୍ଷିକ ପେଶକସ ଏକ ହଜାର ଟଙ୍କା କମାଇ ଦେଇଥିଲେ । ତାଙ୍କର ଦେଓ୍ୱାନ ଚନ୍ଦ୍ରଶେଖର ଧଳଙ୍କୁ ରାୟବାହାଦୂର ଉପାଧି ଓ ମାସିକ ୨୦୦ ଟଙ୍କା ଭତ୍ତା ମିଳିଥିଲା । ତା'ପରେ କେନ୍ଦୁଝରରେ 'ରତ୍ନାମେଳି' ପ୍ରବଳ ଆକାର ଧାରଣ କଲା ।

ଧନୁର୍ଜୟନାରାୟଣ (୧୮୬୭-୧୯୦୫) କେନ୍ଦୁଝରରେ ରାଜା ଥିବା ସମୟରେ 'ଧରଣୀ ବିଦ୍ରୋହ' ଘଟିଥିଲା । ୧୮୬୭ ମସିହାରେ ବିଦ୍ରୋହ ଦମନ ଫଳରେ ଇଂରେଜମାନେ ଧନୁର୍ଜୟ ନାରାୟଣଙ୍କୁ ମଧ୍ୟ ମହାରାଜା ପଦବୀ ପ୍ରଦାନ କରିଥିଲେ । ତାଙ୍କ ପରେ ଗୋପୀନାଥ ନାରାୟଣ କେନ୍ଦୁଝରର ରାଜା ହେଲେ; କିନ୍ତୁ ସେ କଟକରେ ଅବସ୍ଥାନ କରୁଥିଲେ । ତାଙ୍କ ରାଜ୍ୟ କୋର୍ଟ ଅଫ୍ ଓ୍ୱାର୍ଡସର ଅଧୀନରେ ଥିବାରୁ ମୁଖ୍ୟ ପ୍ରଶାସକ ଭାବେ ଇଂରେଜମାନଙ୍କ ଦ୍ୱାରା ନିଯୁକ୍ତ ସୁପରିଣ୍ଟେଣ୍ଡେଣ୍ଟ ରାଜ୍ୟ ଶାସନ କରୁଥିଲେ । ରାଜାଙ୍କ ମୃତ୍ୟୁ ପରେ ବଳଭଦ୍ରନାରାୟଣ ଭଞ୍ଜ ୧୯୨୬ରୁ ୧୯୪୮

ପର୍ଯ୍ୟନ୍ତ କେନ୍ଦୁଝରର ରାଜା ହୋଇଥିଲେ । ତାଙ୍କ ସମୟରେ ସ୍ୱତନ୍ତ୍ର ଓଡ଼ିଶା ଗଠନ, ଭାରତର ସ୍ୱାଧୀନତା ଲାଭ ଏବଂ ୧୯୪୮ ମସିହାରେ କେନ୍ଦୁଝର ଓଡ଼ିଶା ରାଜ୍ୟରେ ମିଶ୍ରଣ ଘଟିଲା । କେନ୍ଦୁଝରରେ ନୂତନ ସୂର୍ଯ୍ୟ ଉଦୟ ଫଳରେ ରାଜ୍ୟବାସୀ ଦେଶର ମୁଖ୍ୟସ୍ରୋତରେ ସାମିଲ ହୋଇଗଲେ ।



## କେନ୍ଦୁଝରର ରାଜବଂଶ

ଉଷା କାବ୍ୟରେ ଭଞ୍ଜବଂଶର ବର୍ଣ୍ଣନା କରାଯାଇ ପାଦଟୀକାରେ ଲେଖାଅଛି— ମୟୂରଧ୍ୱଜବଂଶୀୟ ରାଜାମାନେ ମୟୂରଭଞ୍ଜକୁ ଶାସନ କରୁଥିଲେ । ସେହି ବଂଶର ରାଜାଙ୍କ ଗର୍ବ ଗଞ୍ଜନ କରି ରାଜପୁତନାବାସୀ ଜୟସିଂହଙ୍କର ପୁତ୍ର ଆଦିଭଞ୍ଜ ଓ ଜ୍ୟୋତିଭଞ୍ଜ ଯଥାକ୍ରମେ ମୟୂରଭଞ୍ଜ ଓ କେନ୍ଦୁଝର ରାଜ୍ୟ ଗଠନ କରିଥିଲେ ।

ମହାଯାତ୍ରା କାବ୍ୟରୁ ଜଣାଯାଏ—ଭଞ୍ଜବଂଶର ଉତ୍ପତ୍ତି ବଶିଷ୍ଠ ଋଷିଙ୍କ ଆଶ୍ରମରେ ସୁରକ୍ଷିତ ମୟୂର ଅଣ୍ଡାରୁ ହୋଇଛି । ମହାଭାରତରେ ବର୍ଣ୍ଣିତ ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ସୁରକ୍ଷିତ ଦ୍ରୋଣପକ୍ଷୀର ଅଣ୍ଡାରୁ କୁରୁକୁଳ ଗୁରୁ ଦ୍ରୋଣଙ୍କର ଜନ୍ମ ଉପାଖ୍ୟାନ ସହିତ ଭଞ୍ଜବଂଶର ଉତ୍ପତ୍ତି କାହାଣୀ ପ୍ରାୟ ସମାନ । ଭଂଜବଂଶୀୟ ରାଜାମାନେ ସୂର୍ଯ୍ୟବଂଶୀ ଥିଲେ । ମୟୂରକୁ ସେମାନେ ରାଜକୀୟ ସଙ୍କେତ ଭାବେ ଗ୍ରହଣ କରିଥିଲେ ।

ବୌଦ୍ଧ ଧର୍ମଗ୍ରନ୍ଥ ବିନୟ ପିଟକରୁ ଜଣାଯାଏ ଯେ, ଖ୍ରୀ. ପୂ. ୬୦୦ରେ ଖିଜିଂ ମଣ୍ଡଳ ଉତ୍କଳ ରାଜ୍ୟର ଅଂଶବିଶେଷ ଥାଇ ଭଞ୍ଜବଂଶ ଦ୍ୱାରା ଶାସିତ ହେଉଥିଲା । ଏହି ମଣ୍ଡଳର ସୀମା ବୈତରଣୀ ନଦୀର ଆପାଦମସ୍ତକ ଅଞ୍ଚଳ ତଥା ମହାନଦୀ କୂଳରେ ଅବସ୍ଥିତ ବଉଦ ଓ ଦଶପଲ୍ଲା ପର୍ଯ୍ୟନ୍ତ ବ୍ୟାପିଥିଲା ।

ଭଞ୍ଜବଂଶର ଆଦ୍ୟ ନରପତି ଆଦିଭଞ୍ଜଙ୍କ ନାମ ପୂର୍ବରୁ ଗଣଦଣ୍ଡପତି ପଦବୀ ବ୍ୟବହାର କରାଯାଉଥିଲା । ଗଣଦଣ୍ଡପତିର ଅର୍ଥ—ଗଣତନ୍ତ୍ରର ରକ୍ଷାକର୍ତ୍ତା । ଏଥିରୁ ଅନୁମିତ ହୁଏ ଯେ—ଭଞ୍ଜବଂଶ ପ୍ରତିଷ୍ଠା ମୂଳରେ ଗଣତନ୍ତ୍ରର ଚେତନା ହିଁ ନିହିତ ଥିଲା ।

ଝିଙ୍କିଂକୋଟା ଇତିହାସ ଅନୁସାରେ—ଦ୍ୱାଦଶ ଶତାବ୍ଦୀରେ ରାଜା ଦୁର୍ଜୟ ଭଞ୍ଜଙ୍କ ଶାସନ ଶେଷରେ ସିଂହାସନ ପାଇଁ ବିଦ୍ରୋହ ଘଟିବାରୁ କେନ୍ଦୁଝର ରାଜ୍ୟ ସୃଷ୍ଟି ହୋଇଥିଲା । ନବଗଠିତ ରାଜ୍ୟର ପ୍ରଥମ ରାଜା ଜ୍ୟୋତିଭଞ୍ଜଙ୍କୁ ଆଦିମ ଆଦିବାସୀ ଭୂୟାଁମାନେ ରାଜ୍ୟାଭିଷେକ କରିଥିଲେ । ଝିଙ୍କିଂକୋଟା ରାଜଧାନୀ କେନ୍ଦୁଝର ଅଞ୍ଚଳ-ଠାରୁ ବହୁତ ଦୂରରେ ଥିବାରୁ ଭୂୟାଁମାନେ ଅନେକଗୁଡ଼ିଏ ଅସୁବିଧାର ସମ୍ମୁଖୀନ ହେଉଥିଲେ । ଶୁଣାଯାଏ—ଝିଙ୍କିଂକୋଟାର ରାଜା ଆଦିଭଞ୍ଜଙ୍କ କନିଷ୍ଠ ଭ୍ରାତା ଜ୍ୟୋତିଭଞ୍ଜଙ୍କୁ ସେମାନେ ଗୋପନରେ ନେଇଆସି ଭୂୟାଁପୀଢ଼ ଅନ୍ତର୍ଗତ ବାଂଶପାଳ-ଠାରେ ଲାଳନପାଳନ କରିଥିଲେ । ଜନଶ୍ରୁତିରୁ ପୁଣି ଶୁଣାଯାଏ—ଜ୍ୟୋତିଭଞ୍ଜଙ୍କୁ କରୁଆଗଡ଼ ନାମକ ଦୁର୍ଗମଗିରି ପରିବେଷ୍ଟିତ ଭୂୟାଁପଲ୍ଲୀରେ ଗୋପନରେ ଲାଳନପାଳନ କରୁଥିଲେ । ବୟସ ବଢ଼ିବା ପରେ ତରୁଣ ଜ୍ୟୋତିଭଞ୍ଜଙ୍କୁ ଭୂୟାଁମାନେ ବାଂଶପାଳ-ଠାରେ ରାଜା ହିସାବରେ ବରଣ କଲେ । ବୈତରଣୀ ନଦୀକୂଳ ଦକ୍ଷିଣ ତଟରେ ଜ୍ୟୋତିପୁର ନାମକ ଗ୍ରାମ ସ୍ଥାପନ କରି ସେ ସେଇଠି ନୂତନ ରାଜଧାନୀ ପ୍ରତିଷ୍ଠା କଲେ ।

ରାଜ୍ୟ ସୁପରିଚାଳନା ଦୃଷ୍ଟିରୁ ପରେ ସେହି ରାଜଧାନୀକୁ କେନ୍ଦୁଝରଗଡ଼କୁ ଉଠାଇ ନିଆଯାଇଥିଲା । ରାଜା ଜ୍ୟୋତିଭଞ୍ଜ ଦେବ ୧୧୨୮ ରୁ ୧୧୫୮ ମସିହା ପର୍ଯ୍ୟନ୍ତ କେନ୍ଦୁଝର ରାଜ୍ୟ ଶାସନ କରିଥିଲେ । ସେତେବେଳେ ଓଡ଼ିଶାରେ ଗଙ୍ଗବଂଶ ଶାସନ ଚାଲିଥିଲା । ଭଂଜରାଜାମାନେ ସେମାନଙ୍କର ସାମନ୍ତ ରାଜା ହୋଇ ରହିଥିଲେ । ୧୧୫୮ ମସିହାରେ ଜ୍ୟୋତିଭଂଜଙ୍କ ମୃତ୍ୟୁ ହେବାରୁ ତାଙ୍କର ପୁତ୍ର ଉଦୟ ନାରାୟଣ ଭଂଜ ୧୧୫୮ ରୁ ୧୧୭୩ ମସିହା ପର୍ଯ୍ୟନ୍ତ କେନ୍ଦୁଝରର ରାଜା ହୋଇଥିଲେ । ସେ ବୈତରଣୀ ନଦୀ ଉପକଣ୍ଠରେ ଉଦୟପୁର ନାମକ ଏକ ଗଡ଼ ନିର୍ମାଣ କରିଥିଲେ ।

ଉଦୟଭଞ୍ଜଙ୍କ ମୃତ୍ୟୁ ପରେ ୧୧୭୩ ରୁ ୧୧୭୬ ମସିହା ପର୍ଯ୍ୟନ୍ତ ତାଙ୍କର ପୁଅ ଜଗତେଶ୍ୱର ଭଂଜ ରାଜା ହେଲେ । ତାଙ୍କ ପରେ ଅନନ୍ତନାରାୟଣ ଭଂଜ ୧୧୮୧ ମସିହା ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ତାଙ୍କ ପୁତ୍ର ଦୟାନିଧି ଭଂଜ ଖ୍ରୀ. ୧୧୮୧ ରୁ ଖ୍ରୀ. ୧୨୦୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହାଙ୍କ ପରେ ତାଙ୍କ ପୁତ୍ର ରତ୍ନାକର ଭଂଜ ଖ୍ରୀ. ୧୨୦୧ ରୁ ଖ୍ରୀ: ୧୨୧୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାଙ୍କର ପୁତ୍ର ଚନ୍ଦ୍ରେଶ୍ୱର ଭଂଜ ୧୨୧୮ ରୁ ୧୨୩୬ ମସିହା ପର୍ଯ୍ୟନ୍ତ ରାଜା ହୋଇଥିଲେ । କଥିତ ରାଜାମାନଙ୍କ ସମୟରେ ରାଜ୍ୟରେ କୌଣସି ଉଲ୍ଲେଖନୀୟ କାର୍ଯ୍ୟ ହୋଇ ନଥିଲା ।

ରାଜା ଚନ୍ଦ୍ରେଶ୍ୱର ଭଂଜଙ୍କର ମୃତ୍ୟୁ ପରେ ତାଙ୍କର ପୁତ୍ର ସଚ୍ଚିଦ ଭଂଜ ରାଜ୍ୟଭାର ଗ୍ରହଣ କରିଥିଲେ, କିନ୍ତୁ ୧୨୪୭ ମସିହାରେ ସିଂହାସନ ତ୍ୟାଗ କରି ସନ୍ନ୍ୟାସୀ ହୋଇ ପଲାଶପଣ୍ଟା ଗ୍ରାମ ନିକଟ ଗୁମ୍ଫାରେ ଯୋଗସାଧନା କଲେ ।

ଗୋପୀନାଥ ଭଂଜଙ୍କ ପରେ ହାଡ଼ୁଭଂଜ ୧୪୧୭ ରୁ ୧୪୩୨ ମସିହା ପର୍ଯ୍ୟନ୍ତ କେନ୍ଦୁଝର ରାଜ୍ୟ ଶାସନ କରିଥିଲେ । ତାଙ୍କ ଶାସନ କାଳରେ ହାଡ଼ୁଭଂଜ ନାମକ ପୁଷ୍କରିଣୀ ଖନନ କରାଯାଇ ପାରିଥିବ । କେତେକ ଏହାକୁ ହାଡ଼ଭଙ୍ଗା ପୋଖରୀ ମଧ୍ୟ କହନ୍ତି ।

ତ୍ରିଲୋଚନ ଭଞ୍ଜଙ୍କ (୧୪୭୧-୧୪୮୦) ମୃତ୍ୟୁ ପରେ ପୁତ୍ର ଗୋବିନ୍ଦ ଭଞ୍ଜ ୧୪୮୦ ମସିହାରୁ ୧୫୩୪ ମସିହା ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ସେ ଦୀର୍ଘଜୀବୀ ତଥା ଜଣେ କବିପ୍ରାଣର ଦରଦୀ ମଣିଷ ଥିଲେ । ଶୁଣାଯାଏ—କୌଣସି କାରଣରୁ ପିତାଙ୍କ ସହ ତାଙ୍କର ମତାନ୍ତର ଘଟିବାରୁ ଗୋବିନ୍ଦ ଭଞ୍ଜ ପୁରୀର ଗଜପତି ପୁରୁଷୋତ୍ତମ-ଦେବଙ୍କର ଆଶ୍ରୟ ନେଇଥିଲେ । ୧୪୭୫ ମସିହାରେ ସେ କାଞ୍ଚି ଯୁଦ୍ଧରେ ସେନାପତି ଭାବେ କାର୍ଯ୍ୟକରି ନିଜର ଦକ୍ଷତା ପ୍ରତିପାଦନ କରିଥିଲେ । ସେ କାଞ୍ଚିରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ତାରିଣୀଙ୍କୁ ଆଣି ଘଟଗାରେ ସ୍ଥାପନ କରିଥିବା କଥା କିମ୍ବଦନ୍ତୀରୁ ଜଣାଯାଏ । ସେ ଜଣେ ପ୍ରତିଭାବାନ କବି ହିସାବରେ ବ୍ରହ୍ମଖଣ୍ଡ କାବ୍ୟ ମଧ୍ୟ ରଚନା କରିଯାଇଛନ୍ତି । ୧୫୩୪ ମସିହାରେ ମୃତ୍ୟୁ ଘଟିବାରୁ ତାଙ୍କର ପୁତ୍ର ବୀର ରୁଦ୍ର-ନାରାୟଣ ଭଞ୍ଜ କେନ୍ଦୁଝରର ଶାସନଭାର ଗ୍ରହଣ କରିଥିଲେ । ସେ ୧୫୯୧ ମସିହା ପର୍ଯ୍ୟନ୍ତ ରାଜ୍ୟଶାସନ କରି ନିଜ ନାମ ଅନୁସାରେ ରୁଦ୍ରନାରାୟଣପୁର ନାମକ ଗ୍ରାମ ବସାଇଥିଲେ ।

ତାଙ୍କର ମୃତ୍ୟୁ ପରେ ପୁତ୍ର ଶିବନାରାୟଣ ଭଞ୍ଜ ୧୬୫୪ ମସିହା ପର୍ଯ୍ୟନ୍ତ ରାଜ୍ୟ ଶାସନ କଲେ । ରାଜାଙ୍କର ମୃତ୍ୟୁ ପରେ ପୁତ୍ର ଲକ୍ଷ୍ମୀନାରାୟଣ ଭଞ୍ଜଦେବ ୧୬୫୪ରୁ ୧୬୮୮ ମସିହା ପର୍ଯ୍ୟନ୍ତ କେନ୍ଦୁଝରର ଶାସକ ହେଲେ । ସେ ମୋଗଲ ସାମ୍ରାଜ୍ୟରେ ବିଦ୍ରୋହର ସୁଯୋଗ ନେଇ ଆନନ୍ଦପୁର ମାଛିଆ ଦୁର୍ଗ ଅଧିକାର କରିଥିଲେ । ସେ ଜଣେ ଅନୁସନ୍ଧିତ୍ସୁ ପ୍ରକୃତିର ମଣିଷ ଥିବାରୁ ପୁଣ୍ୟତୋୟା ବୈତରଣୀର ଉତ୍ପତ୍ତିସ୍ଥଳକୁ ନିର୍ଦ୍ଧାରଣ କରିପାରିଥିଲେ । ଗୋନାସିକା ଅଞ୍ଚଳରେ ବ୍ରହ୍ମେଶ୍ୱର ମନ୍ଦିର ଓ ବ୍ରହ୍ମକୁଣ୍ଡ ନିର୍ମାଣ କରାଇଥିଲେ । ତାଙ୍କର ଅମରକୃତିଗୁଡ଼ିକ ମଧ୍ୟରେ କେନ୍ଦୁଝରର ବୃହତ୍ତ ଶ୍ରୀ ଶ୍ରୀ ବଳଦେବ ଜୀଉଙ୍କ ମନ୍ଦିର ଥିଲା ଅନ୍ୟତମ ।

୧୬୮୮ ମସିହାରେ ଲକ୍ଷ୍ମୀନାରାୟଣ ଭଞ୍ଜଙ୍କର ମୃତ୍ୟୁ ପରେ ପୁତ୍ର ଜଗନ୍ନାଥ ଭଞ୍ଜ କେନ୍ଦୁଝର ସିଂହାସନରେ ବସିଲେ । ୧୭୦୦ ମସିହାରେ ତାଙ୍କର ମୃତ୍ୟୁ ହେବାରୁ ପୁତ୍ର ରଘୁନାଥ ଭଞ୍ଜ ଶାସନଭାର ବହନ କଲେ । ସେ ନିଜ ନାମରେ ରଘୁନାଥପୁର ଶାସନ ବସାଇଥିଲେ । ଲୋକହିତକର କାର୍ଯ୍ୟ ମଧ୍ୟରେ ବିଭିନ୍ନ ସ୍ଥାନରେ ପୁଷ୍କରିଣୀ-ମାନ ଖୋଳାଇଥିଲେ ।

୧୭୧୯ ମସିହାରେ ରଘୁନାଥ ଭଞ୍ଜଙ୍କର ମୃତ୍ୟୁ ହେବାରୁ ପୁତ୍ର ଗୋପୀନାଥ ଭଞ୍ଜ ୧୭୨୭ ମସିହା ପର୍ଯ୍ୟନ୍ତ କେନ୍ଦୁଝରର ରାଜା ହୋଇଥିଲେ । ତାଙ୍କର ମୃତ୍ୟୁ ପରେ ପୁତ୍ର ନୃସିଂହନାରାୟଣ ଭଞ୍ଜ ରାଜା ହେଲେ । ସେ ପାଟରାଣୀଙ୍କ ପୁତ୍ର ଥିବାରୁ ରାଜ୍ୟ ପାଇଥିଲେ । ସାନରାଣୀଙ୍କ ପୁତ୍ର ଧନେଶ୍ୱର ଭଞ୍ଜଙ୍କୁ କିନ୍ତୁ ରାଜା ଅଧିକ ସ୍ନେହ କରୁଥିଲେ । ତେଣୁ ପାଟରାଣୀଙ୍କ ପୁତ୍ର କ୍ରୋଧରେ ଜର୍ଜରିତ ହୋଇ ରାଜବାଟୀ ଛାଡ଼ି ନରଣପୁରରେ ରହୁଥିଲେ । ବିଦ୍ରୋହୀ ରାଜକୁମାର ନୃସିଂହନାରାୟଣ ପିତାଙ୍କ ମୃତ୍ୟୁ ପରେ ଜବରଦସ୍ତ ସିଂହାସନ ଆରୋହଣ କରିଥିଲେ । ସେ ପାଞ୍ଚଜଣ ବ୍ରାହ୍ମଣଙ୍କୁ ହତ୍ୟା କରିଥିଲେ । ପରେ ଅନୁତାପ କରି ସେହି ପାଞ୍ଚଜଣ ବ୍ରାହ୍ମଣଙ୍କ ମସ୍ତକକୁ ବଡ଼ଦାଣ୍ଡ ଶ୍ରୀଗୁଣ୍ଡିଚା ମନ୍ଦିର ନିକଟରେ ପୋତି ତା'ଉପରେ ପାଞ୍ଚୋଟି ଶିବଲିଙ୍ଗ ସ୍ଥାପନା କରିଥିଲେ । ସେ ନିଜ ନାମରେ ନୃସିଂହ ନାରାୟଣପୁର ଶାସନ ମଧ୍ୟ ବସାଇଥିଲେ । ୧୭୫୭ ମସିହାରେ ତାଙ୍କର ମୃତ୍ୟୁ ହେବାରୁ ପୁତ୍ର କାମେଶ୍ୱର ଭଞ୍ଜ ରାଜା ହୋଇଥିଲେ । ୧୭୫୮ ମସିହାରେ ତାଙ୍କର ମୃତ୍ୟୁ ପରେ ପୁତ୍ର ଜଗତେଶ୍ୱର ଭଞ୍ଜ ୧୭୬୪ ମସିହା ପର୍ଯ୍ୟନ୍ତ ଶାସନ କରିଥିଲେ ।

୧୭୬୪ ମସିହାରେ ରାଜା ଜଗତେଶ୍ୱର ଭଞ୍ଜଙ୍କର ମୃତ୍ୟୁ ଘଟିଲା । ଫଳରେ ପୁତ୍ର ପ୍ରତାପ ବଳଭଦ୍ର ଭଂଜ ରାଜା ହେଲେ । ସେ ଜଣେ ପ୍ରବଳପ୍ରତାପୀ ରାଜା ଥିଲେ । ତାଙ୍କ ସମୟରେ ରାଜ୍ୟର ସୀମା ବୃଦ୍ଧି ପାଇଥିଲା । ସେ ଥିଲେ ଜଣେ କବିପ୍ରାଣ ରାଜା । 'ଅମ୍ବିକା ବିଳାସ' ତଥା ଅନ୍ୟ କେତୋଟି ଚଉପଦୀ ଓ ଚଉତିଶା ତାଙ୍କ ନାମରେ ଭଣିତା ଥିବାର ଦେଖିବାକୁ ମିଳେ । କବି ବଳଭଦ୍ର ଭଂଜଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ର ଜନାର୍ଦ୍ଦନ ଭଂଜ ୧୭୯୨ ମସିହାରେ ରାଜା ହେଲେ । ସେ ସମଗ୍ର ରାଜ୍ୟକୁ ୫୪ଟି ଦଣ୍ଡପାଟରେ ବିଭକ୍ତ କରି ପ୍ରତ୍ୟେକ ଦଣ୍ଡପାଟରେ ଜଣେ ଲେଖା ସରଦାର ବା ଗଡ଼ନାୟକ ନିଯୁକ୍ତ କରିଥିଲେ । ରାଜା ଜନାର୍ଦ୍ଦନ ଭଂଜ ଜଣେ ସୁଶାସକ, ପ୍ରଜାପାଳକ, ତଥା ଦକ୍ଷ ବୀରପୁରୁଷ ଥିଲେ ।

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଦଖଲ କଲା ପରେ କେନ୍ଦୁଝର ସମେତ ଅନ୍ୟ ଦେଶୀୟ ରାଜାମାନଙ୍କର କ୍ଷମତା କ୍ଷୁଣ୍ଣ ହେଲା । ତେବେ ୨୬ଟି ଗଡ଼ଜାତ ରାଜାମାନଙ୍କ ମଧ୍ୟରୁ ମୟୂରଭଂଜ ଓ କେନ୍ଦୁଝରର ରାଜା ସ୍ୱତନ୍ତ୍ର ସମ୍ମାନ ଓ ଅଧିକାର ଲାଭ କରିଥିଲେ ।

୧୮୩୧ ମସିହାରେ ରାଜା ଜନାର୍ଦ୍ଦନ ଭଂଜଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ବିଶ୍ୱେଶ୍ୱର ଭଂଜ ରାଜା ହୋଇଥିଲେ । ତାଙ୍କର ମୃତ୍ୟୁ ପରେ ପୁତ୍ର ଗଦାଧର ଭଂଜ ୧୮୩୮ ମସିହାରେ ଇଂରେଜ ସରକାରଙ୍କ ସହିତ ସୁସମ୍ପର୍କ ସ୍ଥାପନ କରି ଶାସନସଂସ୍କାର କାର୍ଯ୍ୟରେ ମନୋନିବେଶ କଲେ ।

ସତୀଦାହ ପ୍ରଥା, ମନ୍ଦିରରେ ନରବଳି ପ୍ରଥାକୁ ରାଜା ଗଦାଧର ନାରାୟଣ ଭଂଜ ନିଜ ରାଜ୍ୟରେ ବନ୍ଦ କରିଥିଲେ । ସେ ଜଣେ ବିଶ୍ୱସ୍ତ ମିତ୍ର ଭାବରେ ମହାରାଣୀ ଭିକ୍ଟୋରିଆଙ୍କ ଦିଲ୍ଲୀ ଦରବାର ସଭାରେ ମହାରାଜା ଉପାଧି ଲାଭ କରିଥିଲେ । କିନ୍ତୁ ତାଙ୍କର ପାଟରାଣୀ ବିଷ୍ଣୁପ୍ରିୟା ଅପୁତ୍ରିକା ଥିବାରୁ ସେ ଦ୍ୱିତୀୟ ବିବାହ କରିଥିଲେ । ତାଙ୍କର ପୁତ୍ର ଧନୁର୍ଜୟ ନାରାୟଣ ଭଂଜ ଉତ୍ତରାଧିକାରୀ ଭାବେ ରାଜ୍ୟର ନୂତନ ରାଜା ହୋଇଥିଲେ । କିନ୍ତୁ ପାଟରାଣୀ ବିଷ୍ଣୁପ୍ରିୟା ଦେବୀ ଏଥିରେ ସମ୍ମତି ନ ଜଣାଇ ମୟୂରଭଂଜର ରାଜା ଯଦୁନାଥ ଭଂଜଙ୍କର ସାନଭାଇ ଜ୍ରେଠରାୟ ବୃନ୍ଦାବନ ଭଂଜଙ୍କୁ ପୋଷ୍ୟପୁତ୍ର କରି ଆଣି ରାଜା କରିବାକୁ ଚାହୁଁଥିଲେ । ତେଣୁ ରାଜା ଓ ରାଣୀଙ୍କ ମଧ୍ୟରେ ସର୍ବଦା ବିବାଦ ଲାଗି ରହୁଥିଲା ।

୧୮୬୧ ମସିହା ମାର୍ଚ୍ଚ ମାସ ୨୨ ତାରିଖରେ ମହାରାଜା ଗଦାଧର ନାରାୟଣ ଭଂଜ ତୀର୍ଥଯାତ୍ରା କରୁଥିବା ସମୟରେ କଲିକତାଠାରେ ପ୍ରାଣତ୍ୟାଗ କଲେ । ଫଳରେ କେନ୍ଦୁଝରର ସିଂହାସନ ଅଧିକାରକୁ ନେଇ ବିଦ୍ରୋହ ଆରମ୍ଭ ହୋଇଗଲା । ମୃତ ମହାରାଜାଙ୍କ ଗୁପ୍ତ ଦଲିଲ ଅନୁସାରେ ଧନୁର୍ଜୟ ନାରାୟଣ ଭଂଜ ରାଜଗାଦି ଲାଭ କଲେ । ପାଟରାଣୀଙ୍କ ବିଦ୍ରୋହ ଫଳରେ ରାଜ୍ୟର ପ୍ରଜାମାନେ ଦୁଇଗୋଷ୍ଠୀରେ ବିଭକ୍ତ ହୋଇଗଲେ । ରାଣୀ ଓ ଅନ୍ୟ କେତେକ ପ୍ରଧାନ ରାଜକର୍ମଚାରୀ ମିଶି ବୃନ୍ଦାବନ ଭଂଜଙ୍କୁ ଗୋପନରେ ରାଜା ହିସାବରେ ଅଭିଷେକ କରାଇଦେଲେ । ଶେଷରେ ବିଚାରାଳୟର ରାୟ ଅନୁସାରେ ଧନୁର୍ଜୟ ନାରାୟଣ ଭଂଜ ଉତ୍ତରାଧିକାରୀ ଭାବେ କେନ୍ଦୁଝରର ରାଜା ହେଲେ । ଏହି ଘଟଣାକୁ ନେଇ ଧୀରେ ଧୀରେ ବିଦ୍ରୋହର ସୂତ୍ରପାତ ହେଲା । ଭୂୟାଁ ସର୍ଦ୍ଦାର ରତନା ନାଏକ ନିଜ ଜୀବନ ବିସର୍ଜନ କରି ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ । ଶେଷରେ ଇଂରେଜ ସରକାର ରାଜଦ୍ରୋହ ଦୋଷରେ ତାଙ୍କୁ ଏବଂ ଅନ୍ୟ ଛଅଜଣଙ୍କୁ କଟକ ଜେଲରେ ଫାଶି-ଦଣ୍ଡରେ ଦଣ୍ଡିତ କଲେ । ବିଦ୍ରୋହୀ ରାଣୀ କେନ୍ଦୁଝର ଗୁଣ୍ଡା ପୁରୀରେ ରହୁଥାନ୍ତି । ୧୮୬୯ ମସିହା ଜାନୁଆରୀ ମାସରେ ଓଡ଼ିଶାର କମିଶନର ରେଭେନ୍‌ସା ସାହେବଙ୍କ ଚେଷ୍ଟାରେ ରାଣୀ କେନ୍ଦୁଝର ଆସି ଧନୁର୍ଜୟ ମସ୍ତକରେ ପାଟଶାଢ଼ୀ ବାନ୍ଧି ବିଧିବଦ୍ଧ ଭାବରେ ରାଜା କରାଇଥିଲେ ।

ରତନା ବିଦ୍ରୋହ ପୂର୍ବରୁ କେନ୍ଦୁଝର ରାଜ୍ୟ ଦୁଇଟି ସବ୍‌ଡିଭିଜନରେ ବିଭକ୍ତ ହୋଇରହିଥିଲା । ପ୍ରଶାସନିକ ଦୃଷ୍ଟିରୁ ସୁବିଧା ପାଇଁ ଅପର କେନ୍ଦୁଝରକୁ ଦୁଇ ଭାଗରେ ବିଭକ୍ତ କରି ଭୂୟାଁପୀଢ଼ର କେନ୍ଦ୍ରସ୍ଥଳ ନୟାଗଡ଼ଠାରେ ନୂତନ ସବ୍‌ଡିଭିଜନ ଅଫିସ୍ ଖୋଲାଗଲା । ୧୮୭୭ ମସିହାରେ ରାଜା ଧନୁର୍ଜୟ ନାରାୟଣ ଭଞ୍ଜଙ୍କୁ ମଧ୍ୟ ମହାରାଜା ଉପାଧି ମିଳିଥିଲା । ତାଙ୍କୁ ଆଧୁନିକ କେନ୍ଦୁଝରର ନିର୍ମାତା ଭାବେ ସ୍ୱୀକୃତ

ପ୍ରଦାନ କରାଯାଏ । ସେ ଥିଲେ କେନ୍ଦୁଝର ରାଜ୍ୟର ୩୬ତମ ରାଜା । ତାଙ୍କ ସମୟରେ ଧରଣୀ ମେଳି ପ୍ରବଳ ଆକାର ଧାରଣ କରିଥିଲା । ସେ ସମ୍ପର୍କରେ ସ୍ୱତନ୍ତ୍ର ଆଲୋଚନା କରାଯାଇଛି ।

୧୯୦୫ ମସିହା ଅକ୍ଟୋବର ମାସରେ ରାଜା ଧନୁର୍ଜୟ ନାରାୟଣଙ୍କର ମୃତ୍ୟୁ ଘଟିବାରୁ ଜ୍ୟେଷ୍ଠପୁତ୍ର ଗୋପୀନାଥ ଭଞ୍ଜ କେନ୍ଦୁଝରର ସିଂହାସନ ଆରୋହଣ କଲେ । ସେ ମାତ୍ର ଗୋଟିଏ ବର୍ଷ ପାଇଁ ରାଜା ହେବାର ସୁଯୋଗ ଲାଭ କରିଥିଲେ । ଅନ୍ଧ-ବିଶ୍ୱାସର ବଶବର୍ତ୍ତୀ ହୋଇ ସେ ଘୋଡାଦେବୀଙ୍କ ନିକଟରେ ଗୋପାଳୁଣୀକୁ ବଳିଦେଇ ନରହତ୍ୟା ଦୋଷରେ ଦୋଷୀ ସାବ୍ୟସ୍ତ ହୋଇଥିଲେ । ଫଳରେ ସେ ମଧୁବାବୁଙ୍କ ଉପସ୍ଥିତ ବୁଦ୍ଧି ଫଳରେ ପାଗଳ ଘୋଷିତ ହୋଇ ମୃତ୍ୟୁଦଣ୍ଡରୁ ମୁକ୍ତ ପାଇ କଟକରେ ଅବସ୍ଥାନ କଲେ । ତେଣୁ କେନ୍ଦୁଝର ରାଜା ଷ୍ଟେଟ୍ କୋର୍ଟ ଅଫ୍ ଓ୍ୱାର୍ଡସ ହୋଇ ୧୯୦୬ ମସିହାରୁ ରହିଲା । ଇଂରେଜମାନେ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କେନ୍ଦୁଝର ରାଜ୍ୟ ଶାସିତ ହେଲା । ଏହି ସମୟରେ ଚମ୍ପୁଆ-ଯାଜପୁର ରାସ୍ତା ତିଆରି ହୋଇଥିଲା । ଚମ୍ପୁଆ ଠାରେ ବୈତରଣୀ ପୋଲ ନିର୍ମିତ ହୋଇଥିଲା ।

୧୯୧୧ ମସିହାରେ ମିଷ୍ଟର ଜେ. ଏଚ୍. ଗ୍ରାଇନ୍ ସାହେବ କେନ୍ଦୁଝରର ସୁପରିଟେଣ୍ଡେଣ୍ଟ୍ ହୋଇ ଶାସନଭାର ବହନ କଲେ । ତାଙ୍କ ସମୟରେ ସୁବିଶାଳ କଚେରୀଗୃହ ନିର୍ମାଣ କରାଯାଇଥିଲା । ଏହା ବର୍ତ୍ତମାନ ଜିଲ୍ଲା କଲେକ୍ଟୋରେଟ୍ ଭାବେ କାର୍ଯ୍ୟ କରିଆସୁଛି । ଅରଡେଇ ନଦୀ ଉପରେ ସୁଦୀର୍ଘ ପୋଲ ଓ ଟାଉନ୍‌ହଲ ନିର୍ମାଣ ସମେତ ଅନେକ ଜନହିତକର କାର୍ଯ୍ୟ ହୋଇଥିଲା । ଏହି ସମୟରେ କେନ୍ଦୁଝରରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ।

୧୯୦୬ ମସିହାରୁ ବହିଷ୍କୃତ ରାଜା ଗୋପୀନାଥ ଭଞ୍ଜଙ୍କର ମୃତ୍ୟୁ ହେବା ଫଳରେ ତାଙ୍କର ଜ୍ୟେଷ୍ଠପୁତ୍ର ବଳଭଦ୍ର ନାରାୟଣ ଭଞ୍ଜ ୧୯୨୬ ମସିହାରେ ରାଜା ହୋଇ ସାମାନ୍ୟ କ୍ଷମତା ଲାଭ କରିଥିଲେ । ୧୯୨୯ ମସିହାରେ ୨୪ ବର୍ଷରେ ପଦାର୍ପଣ କରି ସେ ରାଜ୍ୟର ପୂର୍ଣ୍ଣ କ୍ଷମତା ହାସଲ କରିଥିଲେ । ସେ ଜଣେ ଧର୍ମପରାୟଣ ରାଜା ଥିବାରୁ ବିଭିନ୍ନ ମନ୍ଦିରର ପୁନଃନିର୍ମାଣ ଓ ଜୀର୍ଣ୍ଣୋଦ୍ଧାର କରିଥିଲେ । ତାଙ୍କ ଶାସନ କାଳରେ ଟକଶାଳୟ, ସାମାକୋଇ ନଦୀ ଉପରେ ସେତୁ ନିର୍ମିତ ହୋଇଥିଲା । ସେ ଥିଲେ କେନ୍ଦୁଝର ରାଜ୍ୟର ଶେଷ ସ୍ୱାଧୀନ ରାଜା ।



# କେନ୍ଦୁଝରର ନଦୀ, ବଣ, ପାହାଡ଼, ପର୍ବତ

ଆଧୁନିକ କେନ୍ଦୁଝର ଜିଲ୍ଲା ଅସଂଖ୍ୟ ନଦୀ, ପର୍ବତ, ଝରଣା ଓ ଜଳପ୍ରପାତରେ ପରିପୂର୍ଣ୍ଣ । ପର୍ବତମାଳିନୀ କେନ୍ଦୁଝରରେ ଥିବା ମୁଖ୍ୟ ପର୍ବତଗୁଡ଼ିକ ହେଲା— ଗୋନାସିକା, ଖଣ୍ଡାଧାର, ମେଘାସନ, ମାଲ୍ୟଗିରି, ସଙ୍କେଇଭଂଜ, ବଢ଼ଲା, ଠାକୁରାଣୀ, ବଳୀ, ଦୈତାରି ଓ ଗନ୍ଧମାର୍ଦ୍ଦନ । ଏହି ପର୍ବତଗୁଡ଼ିକ ଖଣିଜ, ବନଜ ଓ ବନୌଷଧିରେ ପରିପୂର୍ଣ୍ଣ ।

କେନ୍ଦୁଝର ଗଡ଼ଠାରୁ ମାତ୍ର ପାଞ୍ଚ କି. ମି. ଦୂରରେ ଗନ୍ଧମାର୍ଦ୍ଦନ ପର୍ବତ ଅବସ୍ଥିତ । ଏହାର ଉଚ୍ଚତା ୩୪୭୯ ଫୁଟ । ଏହା ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ । ଭଞ୍ଜବଂଶର ଅଧିଷ୍ଠାତ୍ରୀ ଦେବୀ ‘ଦଣ୍ଡଦେବୀ’ଙ୍କର ଏହା ବିହାରସ୍ଥଳୀ ।

ଗୋନାସିକା ପର୍ବତରୁ ପୁଣ୍ୟତୋୟା ବୈତରଣୀ ଆତ୍ମପ୍ରକାଶ କରିଛି । ଏହି ବୈତରଣୀ, ଶାଳନ୍ଦୀ, କାଣିଝରି, କୁଶଭଦ୍ରା, ସାମାକୋଇ, ସେଣ୍ଢେଇ, ରେମାଳ, ଅରଡ଼େଇ, ସୀତା, ମୂଷଳ, ମୁହାଣ, ମାଛକାନ୍ଦଣା ପ୍ରଭୃତି ଗିରି ନିର୍ଝରିଣୀ ନଦୀ ମାତୃକା ରୂପେ ଜଳଦାନ କରି ଶ୍ୟାମଳା କରିଛନ୍ତି ।

କେନ୍ଦୁଝରର ମୁଖ୍ୟନଦୀ ପୁଣ୍ୟତୋୟା ବୈତରଣୀର କୂଳେ କୂଳେ ଗଢ଼ି ଉଠିଛି—କେନ୍ଦୁଝରର ସଭ୍ୟତା । ଗୋନାସିକା ପର୍ବତ କେନ୍ଦୁଝରଗଡ଼ଠାରୁ ୧୫ କି. ମି. ଦକ୍ଷିଣରେ କେନ୍ଦୁଝର—ତେଲକୋଇ ରାସ୍ତାର ଅନତିଦୂରରେ ଅବସ୍ଥିତ । ଏହାର ଉଚ୍ଚତା ପ୍ରାୟ ୩୨୧୯ ଫୁଟ । ବୈତରଣୀ ନଦୀ ଏହି ପର୍ବତରେ ୩୧୦୦ ଫୁଟ ଉଚ୍ଚରୁ ନିମ୍ନଦେଶକୁ ପ୍ରବାହିତ ହୋଇ ୩୪୪ କି. ମି. ପଥ ଅତିକ୍ରମ କରି ଶେଷରେ ଧାମରା ମୁହାଣରେ ସମୁଦ୍ରରେ ଲୀନ ହୋଇଯାଇଛି । ଏହାର ଅବବାହିକା

୧୨୪୪୦ ବର୍ଗ କି. ମି. । କେନ୍ଦୁଝର ଜିଲ୍ଲା ମଧ୍ୟରେ ବୈତରଣୀ ନଦୀ ପ୍ରାୟ ଦୁଇଶହ କି. ମି. ପ୍ରବାହିତ ହୋଇଛି ।

ସବଂନ୍ଦ ବୈତରଣୀର ଜନ୍ମ ସମ୍ପର୍କରେ ଅସଂଖ୍ୟ କାହାଣୀ ଶୁଣାଯାଏ । ପୁରାଣ-ପ୍ରସିଦ୍ଧ ପୁଣ୍ୟତୋୟା ବୈତରଣୀ କେନ୍ଦୁଝର ଅଞ୍ଚଳର ପ୍ରାଚୀନ ଜୁଆଙ୍ଗ ସଂପ୍ରଦାୟର ଅଧିଷ୍ଠାତ୍ରୀ ଦେବୀ ଭାବରେ ପୂଜା ପାଆନ୍ତି । 'ଗୁପ୍ତଗଙ୍ଗା' ନାମକ ଜୁଆଙ୍ଗ ପଲ୍ଲୀର ପାର୍ଶ୍ୱସ୍ଥ ପର୍ବତରେ ଦୁଇହାତରେ କୁମ୍ଭ ଧାରଣ କରିଥିବା ଏକ ପ୍ରସ୍ତରମୂର୍ତ୍ତି ଦର୍ଶକଙ୍କର ଦୃଷ୍ଟିଆକର୍ଷଣ କରେ—ଏହା ମଧ୍ୟ ଜୁଆଙ୍ଗ ଜାତିର ଅଧିଷ୍ଠାତ୍ରୀ ଦେବୀ 'ବୈତରଣୀ' ନାମରେ ପୂଜିତ ହୁଏ । କେବଳ ସେତିକି ନୁହେଁ, ଏହାର ଜଳ ଅତ୍ୟନ୍ତ ପବିତ୍ର ହୋଇଥିବାରୁ ଏଥିରେ ପ୍ରତିବର୍ଷ ବାରୁଣୀସ୍ନାନ ଓ ପିତୃଗଣଙ୍କର ଅସ୍ଥି ବିସର୍ଜନ କରାଯାଏ ।

ବୈତରଣୀ ନଦୀ ଉତ୍ପତ୍ତିସ୍ଥଳଠାରୁ କିଛି ଦୂରରେ ଗିରିବକ୍ଷରେ ଗୁପ୍ତ ହୋଇ-ଯାଇ ପୁନର୍ବାର ଗୁପ୍ତଗଙ୍ଗାଠାରେ ବ୍ରହ୍ମକୁଣ୍ଡରେ ପ୍ରକାଶ ପାଇଛି । ଏହାର ପ୍ରତି ଏକକୋଶ ଦୂରତ୍ୱରେ ଜଳ ମଧ୍ୟରେ ଗୋଟିଏ ଗୋଟିଏ କୁଣ୍ଡଳିଙ୍ଗ ସ୍ଥାପିତ ହୋଇ ବୈତରଣୀକୁ ଆହୁରି ଅଧିକ ପବିତ୍ର କରିଛନ୍ତି ।



# କେନ୍ଦୁଝରର ନଦୀ ଓ ଗିରିଶୃଙ୍ଗ

**ନଦୀମାନଙ୍କର ନାମ**

| | | | |
|---|---|---|---|
| ବୈତରଣୀ | କାଂଝାଗ୍ର ୫୭କ.ମି. | ଅରଡ଼େଇ | ସୀତା ୧୭ କ.ମି. |
| କୁକୁରକଟା ୩୨କ.ମି. | କୁଶେଇ | ମୁଷଳ ୫୩କ.ମି. | ସାମାମୋଇ ୫୦କ.ମି. |
| ମାଛକାନ୍ଦଣା | କାଙ୍ଗେ | ଶାଳନ୍ଧ | ରେମାଳ |
| | ହନୁମନ୍ତିଆ | | |

**ଗିରଶୃଙ୍ଗର ନାମ**

| | |
|---|---|
| ମାଙ୍କଡ଼ନଗ୍ଧ (୧୧୧୭ ମି.) | ଠାକୁରାଣୀ (୯୧୫ ମି.) |
| ଗନ୍ଧମାର୍ଦ୍ଦନ (୧୦୬୦ ମି.) | ଝଣ୍ଡାଧାର ପର୍ବତ (୯୧୫ ମି.) |
| ଗୋନାସିକା (୯୭୮ ମି.) | ରଙ୍ଗା (୮୯୭ ମି.) |
| ଖଜାରୁ (୯୧୮ ମି.) | ଟମକା (୭୮୫ ମି.) |



# କେନ୍ଦୁଝରର ଜଳସେଚନ ବ୍ୟବସ୍ଥା

ବୃହତ୍ ଜଳସେଚନ ପ୍ରକଳ୍ପ—ଶାଳନ୍ଧ ଜଳସେଚନ ପ୍ରକଳ୍ପ

ଜଳସେଚିତ ଅଞ୍ଚଳ—୧୭, ୯୮୯.୯୭ ଏକର

ମଧ୍ୟମ ଜଳସେଚନ ପ୍ରକଳ୍ପ ଓ ଜଳସେଚିତ ଅଞ୍ଚଳ—

୧ । ରେମାଳ (୧୫,୫୩୭.୯୭) ଏକର ।

୨ । କାନଝାଗ୍ର (୧୧,୭୯୨.୯୪) ଏକର ।

କ୍ଷୁଦ୍ର ଜଳସେଚନ ପ୍ରକଳ୍ପ—୧୫୦ଟି

ଏଦ୍ୱାରା ଜଳସେଚିତ ଅଞ୍ଚଳ—୫୨,୪୮୨.୫୭ ଏକର



# କେନ୍ଦୁଝରରେ ଦର୍ଶନୀୟ ସ୍ଥାନ

ବି. ଦ୍ର.—କେନ୍ଦୁଝରର ଦେବଦେବୀ ଶୀର୍ଷକ ସ୍ୱତନ୍ତ୍ର ପ୍ରବନ୍ଧରେ ବିଭିନ୍ନ ଦେବଦେବୀଙ୍କ ବିଷୟରେ ସୂଚନା ଦିଆଯାଇଥିବାରୁ ଏଠାରେ କେବଳ ଦର୍ଶନୀୟ ସ୍ଥାନର ସୂଚନା ଦିଆଯାଉଛି ।

ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ କେନ୍ଦୁଝର ଜିଲ୍ଲାର ସ୍ଥାନ ଅତ୍ୟନ୍ତ ଉଚ୍ଚରେ । ଓଡ଼ିଶା ତଥା ଭାରତର ବିଭିନ୍ନ ଅଞ୍ଚଳର ପ୍ରକୃତିପ୍ରେମୀ ଶୋଭା-ସୌନ୍ଦର୍ଯ୍ୟପିପାସୁ ଭ୍ରମଣକାରୀ କେନ୍ଦୁଝରର ଶୋଭାସମ୍ପଦକୁ ଉପଭୋଗ କରିବାକୁ ଆସିଥାନ୍ତି । ପର୍ବତ-ମାଳିନୀ କେନ୍ଦୁଝରର ଅପୂର୍ବ ଶୋଭାରେ ଭରପୂର ବୃକ୍ଷରାଜି, ଶାଳବଣ, ଉପତ୍ୟକା ଏବଂ ଜଳପ୍ରପାତ ପ୍ରତ୍ୟେକ ଭ୍ରମଣକାରୀଙ୍କ ହୃଦୟରେ ଆଣିଦିଏ ଚରମ ତୃପ୍ତି ।

ଘଟଗାଁର ମାଆ ତାରିଣୀ, ଦେଓଗାଁର କୋଶଳେଶ୍ୱର, କେନ୍ଦୁଝର ଗଡ଼ର ଶ୍ରୀବଳଦେବଜୀଉ, ଯୋଡ଼ା ନିକଟ ମୁର୍ଗା ମହାଦେବ, ବାରହାଟିପୁରର ନୀଳକଣ୍ଠେଶ୍ୱର, ଷୀରେଇଟାଙ୍ଗିରିର ଶୂନ୍ୟମନ୍ଦିର, ଆନନ୍ଦପୁରର ଦଧିବାମନଜୀଉ ଓ ଚମ୍ପୁଆର ଚନ୍ଦ୍ରଶେଖରଙ୍କ ଭଳି କେନ୍ଦୁଝରରେ ଅସଂଖ୍ୟ ଦେବୀପୀଠ ଓ ଶୈବପୀଠ ବିଷ୍ଣୁପ୍ରେମୀ ଭକ୍ତମାନଙ୍କର ହୃଦୟରେ ଭ୍ରମଣ ତୃଷା ମେଣ୍ଟାଇଥାଏ ।

ପ୍ରକୃତିପ୍ରେମୀ ଭ୍ରମଣକାରୀଙ୍କ ପାଇଁ ଯେଉଁସବୁ ଦର୍ଶନୀୟ ସ୍ଥାନ କେନ୍ଦୁଝରରେ ଅବସ୍ଥିତ, ସେଗୁଡ଼ିକ ହେଲା—ଗୋନାସିକା, ଖଣ୍ଡାଧାର, ଗୁଣ୍ଡିଚା ଘାଟି, ବଡ଼ଘାଗରା, ସାନଘାଗରା, ସୀତାବିଞ୍ଜି, ହାଣ୍ଡିଭଙ୍ଗା, ଚକ୍ରତୀର୍ଥ, ଭୀମକୁଣ୍ଡ । ଏହା ବ୍ୟତୀତ ଆହୁରି ଅନେକ ଅଘୋଷିତ ପର୍ଯ୍ୟଟନସ୍ଥଳୀ ମଧ୍ୟ ରହିଛି ।

## ଗୋନାସିକା (ଗୁପ୍ତଗଙ୍ଗା)—

ପୁରାଣପ୍ରସିଦ୍ଧ ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଗୋନାସିକା । ବୈତରଣୀର ଉତ୍ପତ୍ତିସ୍ଥଳରେ ବ୍ରହ୍ମେଶ୍ୱରଙ୍କର ମନ୍ଦିର ଅବସ୍ଥିତ । ବ୍ରହ୍ମକୁଣ୍ଡଠାରୁ ୫ କି. ମି. ଦୂରରେ ଗୁପ୍ତଗଙ୍ଗା ଗିରିର ୩,୦୦୦ ଫୁଟ ଉଚ୍ଚରେ ଝରଣା ଆକାରରେ ନିର୍ଗତ ହୋଇ ପଥରକୁଣ୍ଡରେ ସଞ୍ଚିତ ହୁଏ । ତାହା କିଛିବାଟ ପ୍ରବାହିତ ହୋଇ ଗୁପ୍ତଗଙ୍ଗାଠାରେ ଗୁପ୍ତ ହୋଇଯାଇଛି । ସେଠାରେ ନିର୍ମିତ ତ୍ରିବେଣୀ କୁଣ୍ଡର ୩୦୦ ଫୁଟ ଉଚ୍ଚରେ ଗୁପ୍ତଗଙ୍ଗା ଗିରିର ଶୀର୍ଷଦେଶରେ ଆଦ୍ୟ ବୈତରଣୀର ଜଳାଧାର ପ୍ରବାହିତ ହେଉଛି । ସାଧାରଣ ଦର୍ଶକମାନେ ତ୍ରିବେଣୀ କୁଣ୍ଡଠାରୁ ବୈତରଣୀ ନଦୀର ଆଦ୍ୟ ଜଳଧାର ଉତ୍ପତ୍ତି ହେଉଛି ବୋଲି ମନେକରିଥାନ୍ତି । ପ୍ରକୃତ ଉତ୍ପତ୍ତିସ୍ଥଳ ଘନ ଅରଣ୍ୟପୂର୍ଣ୍ଣ, ଶ୍ୱାପଦଶଙ୍କୁଳ, ବଣ୍ୟପ୍ରାଣୀବହୁଳ ଭୟଙ୍କର ସ୍ଥାନ ହୋଇଥିବାରୁ ସେଠାକୁ ସାଧାରଣ ଦର୍ଶକଙ୍କୁ ପ୍ରବେଶ ନିଷେଧ କରାଯାଇଛି । ସେଠାରେ ବୈତରଣୀର ଆଦ୍ୟଜଳ ହସ୍ତୀଶୁଣ୍ଢ ପ୍ରାୟ ପ୍ରକାଶ ପାଇଥାଏ । ତା' ନିକଟରେ ଏକ ବୃହତ୍‌କାୟ ପ୍ରସ୍ତରବକ୍ଷ ବିଦାରିତ ହୋଇ ରକ୍ତବର୍ଣ୍ଣା ଜଳ ପ୍ରବାହିତ ହେଉଥିବା କଥା କେତେକ ପ୍ରତ୍ୟକ୍ଷ-ଦର୍ଶୀ କର୍ଣ୍ଣନା କରନ୍ତି । ବୈତରଣୀ ନଦୀ ପାପହାରିଣୀ, ପବିତ୍ର, ପୁଣ୍ୟତୋୟା ହୋଇଥିବାରୁ ଏହାର ଉତ୍ପତ୍ତିସ୍ଥଳ ଗୋନାସିକାର ମହତ୍ତ୍ୱ ସହଜରେ ଉପଲବ୍‌ଧି କରିହୁଏ । ଏହି ଗୋନାସିକାକୁ ଯିବାପାଇଁ ଛଅନମ୍ବର ଜାତୀୟ ରାଜପଥରୁ ମାତ୍ର ୧୬ କି.ମି. ଭିତରକୁ ପିଚୁରାସ୍ତାରେ ଯିବାକୁ ପଡ଼େ । ସେଠାରେ ପ୍ରାଚୀନ ଆଦିବାସୀ ଜୁଆଙ୍ଗମାନେ ବସବାସ କରନ୍ତି । ସଂପ୍ରତି ସେଠାରେ ବହୁ ଉନ୍ନୟନମୂଳକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଗୋନାସିକାର ପ୍ରାକୃତିକ ଶୋଭା ଯେପରି ମନଲୋଭା, ସେହିପରି ଉପଭୋଗ୍ୟ ।

## ଖଣ୍ଡାଧାର—

ଖଣ୍ଡାଧାର ଜଳପ୍ରପାତ ଦର୍ଶକମାନଙ୍କ ଦୃଷ୍ଟିରେ ଅତ୍ୟନ୍ତ ରମଣୀୟ । ପର୍ବତ ଶିଖରର ୫୦୦ ଫୁଟ ଉଚ୍ଚରୁ ହଠାତ୍ ବୃହତ୍ ଜଳରାଶି ତଳେ କଚାଡ଼ିହୋଇ ପଡ଼େ । ଏତେ ଉଚ୍ଚରୁ ଖସିପଡ଼ୁଥିବା ଜଳରାଶି ଛୋଟ ଛୋଟ ଜଳକଣାରେ ପରିଣତ ହୋଇ ଅଭିନବ ରୂପରେ ଶୋଭା ପ୍ରକାଶ କରେ ।

କେନ୍ଦୁଝରଠାରୁ ଉତ୍ତର ପଶ୍ଚିମ ଅଞ୍ଚଳରେ ଏହି ଖଣ୍ଡାଧାର ପର୍ବତ ଅବସ୍ଥିତ । କେନ୍ଦୁଝର ଓ ବଣେଇ ସୀମାରେ ଏହି ଅପରୂପା ଖଣ୍ଡାଧାର ଜଳପ୍ରପାତର ନିମ୍ନ-ଦେଶରେ ଶିବ ମନ୍ଦିର, ଆଶ୍ରମ ଓ ଅଘୋଷ୍ଠି ଅଗ୍ନିକୁଣ୍ଡ ଅବସ୍ଥିତ ।

କେନ୍ଦୁଝର ଆଉ ଛଅନମ୍ବର ଜାତୀୟ ରାଜପଥରୁ ଶୁଆକାଟିଠାରୁ ଡାହାଣକୁ ଯାଇଥିବା ବାଂଶପାଳ ରାସ୍ତାରେ କାଦକଳା ଗ୍ରାମ ପରେ ଏହି ଖଣ୍ଡାଧାର ଜଳପ୍ରପାତ ପଡ଼େ । ଏହା କେନ୍ଦୁଝରଠାରୁ ମାତ୍ର ୫୦ କି. ମି. ଦୂରରେ ଅବସ୍ଥିତ । ପର୍ବତ ଶିଖରରେ ସୁନ୍ଦର ବୃକ୍ଷରାଜିକୁ ମଧ୍ୟ ଦର୍ଶକ ଉପଭୋଗ କରିଥା'ନ୍ତି ।

**ବଡ଼ଘାଗରା—**

ଛଅ ନମ୍ବର ଜାତୀୟ ରାଜପଥର କେନ୍ଦୁଝରଠାରୁ ପ୍ରାୟ ୯୨ କି. ମି. ଦୂରରେ ପାହାଡ଼ ଉପରେ ପ୍ରବାହିତା ମାଛକାନ୍ଦଣା ନଦୀ ହଠାତ୍ ପାହାଡ଼ ତଳକୁ ଡେଇଁପଡ଼ି ବଡ଼ଘାଗରା ନାମକ ସ୍ଥାନରେ ଜଳପ୍ରପାତ ସୃଷ୍ଟି କରିଥିଲା । ଘୋ-ଘୋ ଗର୍ଜନ କରି ଜଳ ପଡ଼ୁଥିବାରୁ ସେ ସ୍ଥାନର ନାମ 'ଘାଗରା' ହୋଇଥିବା ବିଶ୍ୱାସ କରାଯାଏ । ସମ୍ପ୍ରତି ଜଳସେଚନ ବିଭାଗ ତରଫରୁ ସେହି ଜଳରାଶିକୁ ଅଟକାଇବା ପାଇଁ ଏକ ସରସ, ସୁନ୍ଦର ମାଟିବନ୍ଧ ନିର୍ମାଣ କରାଯାଇଛି । ଫଳରେ ସେଠାରେ ଏକ ବୃହତ୍ ଜଳଭଣ୍ଡାର ସୃଷ୍ଟି ହୋଇଛି । ଜଳଭଣ୍ଡାର ଜଳକୁ ସୁନିୟନ୍ତ୍ରିତ ଭାବେ ସୁଡ଼ଙ୍ଗ ମାଧ୍ୟମରେ ତଳକୁ ଖସାଇନେଇ ସେଠାରେ ଏକ କ୍ଷୁଦ୍ର ବିଦ୍ୟୁତ୍‌କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ପୁନଶ୍ଚ ସେହି ଜଳ ଚାଷୀମାନଙ୍କୁ ଯୋଗାଇଦେଇ କୃଷିର ଉନ୍ନତି କରାଯାଇପାରୁଛି । ସେଠାକାର ଜଳଭଣ୍ଡାର, ବିଦ୍ୟୁତ୍‌କେନ୍ଦ୍ର ଏବଂ ପ୍ରାକୃତିକ ଦୃଶ୍ୟାବଳୀ ଦର୍ଶକ ମନରେ ଆନନ୍ଦଦାନ କରିଥାଏ ।

**ସାନଘାଗରା—**

କେନ୍ଦୁଝର ସହରଠାରୁ ମାତ୍ର ୬ କି. ମି. ଦୂର ୬ ନମ୍ବର ଜାତୀୟ ରାଜପଥକୁ ଲାଗି ରହିଥିବା ଗୋବରା ପାହାଡ଼ ଉପରେ କେନ୍ଦୁଝରର ଅନ୍ୟତମ ମନୋରମ ଜଳ-ପ୍ରପାତ ଅବସ୍ଥିତ । ମାଛକାନ୍ଦଣା ନଦୀର କଙ୍କରିତ ବକ୍ଷ ବିଦାରି ଆସୁଥିବା ଜଳରାଶି ହଠାତ୍ ନବେଫୁଟ ଉଚ୍ଚରୁ ତଳକୁ କମ୍ପିତ ହୋଇପଡ଼ି 'ସାନଘାଗରା' ଜଳପ୍ରପାତ ସୃଷ୍ଟି କରିଛି । ସମ୍ପ୍ରତି ସରକାରଙ୍କ ତରଫରୁ ଦର୍ଶକମାନଙ୍କୁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ଏକ ସୁରମ୍ୟ ଉଦ୍ୟାନ ନିର୍ମାଣ କରାଯାଇଛି । ଏଠାକୁ ପ୍ରତିବର୍ଷ ହଜାର ହଜାର ଦର୍ଶକ ଓ ପର୍ଯ୍ୟଟକ ଆସି ନୟନର ତୃଷା ମେଣ୍ଟାଇଥା'ନ୍ତି ।

**ସୀତାବିଞ୍ଜି—**

କେନ୍ଦୁଝର-କଟକ ରାସ୍ତାରେ ଡେଙ୍ଗିକୋଟଠାରୁ ପାଞ୍ଚ କି. ମି. ପୂର୍ବରୁ ଡାହାଣ ପଟକୁ ଯାଇଥିବା ରାସ୍ତାଟି ଇତିହାସ-ପ୍ରସିଦ୍ଧ ସୀତାବିଞ୍ଜିକୁ ଯାଇଛି । ଘନ ବନପର୍ବତ ପରିବେଷ୍ଟିତ ଡାଙ୍ଗଆପଶି ଗ୍ରାମରେ ସୀତାବିଞ୍ଜି ପର୍ବତ କଟରାବେଡ଼ା ଗ୍ରାମଠାରୁ

ମାତ୍ର ଆଠ କି. ମି. ଦୂରରେ ଅବସ୍ଥିତ । ଏହି ପର୍ବତର ପାଦଦେଶରେ ସୀତା ନଦୀ ପ୍ରବାହିତା ।

ଜନଶ୍ରୁତିରୁ ଜଣାଯାଏ—ସୀତାଦେବୀ ତାଙ୍କର ଦୁଇପୁତ୍ର ଲବକୁଶଙ୍କୁ ଏହି ପର୍ବତ ଗୁମ୍ଫାରେ ଜନ୍ମ ଦେଇଥିଲେ । ତେଣୁ ତାର ସ୍ମାରକୀସ୍ୱରୂପ ସୀତାବିଞ୍ଜି ପର୍ବତରେ ବୃହତ୍ ପ୍ରସ୍ତରଖଣ୍ଡ ତଳେ ସୀତାଦେବୀଙ୍କ ଏନ୍ଥୁଡ଼ିଶାଳରେ ଲବ ଓ କୁଶଙ୍କର ନାମରେ ଦୁଇଖଣ୍ଡ ଶିଳା ପୂଜା ପାଇଆସୁଛନ୍ତି । ଅଲୌକିକ ବିଶ୍ୱାସ ଅଛି ଯେ, ସେଠାକୁ ବନ୍ଧ୍ୟାନାରୀମାନେ ଆସି ଲବକୁଶଙ୍କ ପ୍ରତୀକ ପ୍ରସ୍ତରଖଣ୍ଡକୁ କାଖେଇ କାଖେଇ ସୀତା-ଦେବୀଙ୍କ ଏନ୍ଥୁଡ଼ିଶାଳ ଚାରିପାଖ ବୁଲିଗଲେ ତାଙ୍କର ବନ୍ଧ୍ୟାତ୍ୱ ଦୂର ହୋଇଯାଏ ।

ଏହି ପର୍ବତ ପଦେ ଦସ୍ୟୁରତ୍ନାକରର ଆଡ୍ଡାସ୍ଥଳୀ ଥିବା କଥା ମଧ୍ୟ ପ୍ରବାଦ ଅଛି । ଏହାର ସ୍ମାରକୀସ୍ୱରୂପ ସେଠାରେ ଖଣ୍ଡଘର ନାମକ ଗାଆଁଟିଏ ଅଛି । ସୀତାବିଞ୍ଜିର ଗିରିପୃଷ୍ଠରେ ଓ ସୁବିସ୍ତୀର୍ଣ୍ଣ ପାଦଦେଶରୁ ପ୍ରାଚୀନକାଳର ସ୍ତୂପ, ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ରର ଭଗ୍ନାବଶେଷ ଏବଂ ପ୍ରାଚୀନ ମୁଦ୍ରା ମିଳିଥାଏ । ସେଠାକାର ଧ୍ୱଂସସ୍ତୂପ ଓ ଧ୍ୱଂସାବଶେଷ ଦେଖି ମନେହୁଏ—ସେଠାରେ ପ୍ରାଚୀନ ଯୁଗରେ କୌଣସି ଏକ ଉନ୍ନତ ସଭ୍ୟତା ଗଢ଼ି ଉଠିଥିଲା, କିମ୍ବା ବୌଦ୍ଧଯୁଗର ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ଏଠାରେ ହିଁ ଥିଲା ।

ସୀତାବିଞ୍ଜି ନିକଟରେ ଥିବା ବୃହତ୍କାୟ ମନ୍ଦିରସଦୃଶ ପର୍ବତକୁ ସ୍ଥାନୀୟ ଲୋକମାନେ 'ଭଣ୍ଡାରଘର' ବୋଲି କହିଥାନ୍ତି । ଲୋକ-ବିଶ୍ୱାସ ଯେ, ବାଲ୍ମୀକୀଙ୍କ ଆଶ୍ରମର ସମସ୍ତ ଧନରତ୍ନ ଏହି ଭଣ୍ଡାରରେ ସଞ୍ଚିତ ହୋଇରହିଛି ।

ଭଣ୍ଡାରଘର ନିକଟସ୍ଥ ଭଗ୍ନସ୍ତୂପକୁ ଆଶ୍ରମର 'ରନ୍ଧାଘର' କୁହାଯାଏ । ସେଠାରେ ଋଷିଗୁମ୍ଫା ନାମରେ ଏକ ବୃହତ୍ ପ୍ରସ୍ତର ସ୍ତୂପ ରହିଛି । ଏହାର ଚାରିଦିଗରେ ଖୁବ୍ ଲମ୍ବା, ଓସାରିଆ ଓ ବୃହତ୍ ପ୍ରସ୍ତରଖଣ୍ଡ ଦେଖିବାକୁ ମିଳେ, ଯାହା ଅନ୍ୟତ୍ର ଦୁର୍ଲଭ ।

ସୀତାବିଞ୍ଜିଠାରେ ଗୋଟିଏ ଧବଳ ହସ୍ତୀ ଓ ପଞ୍ଚମୁଖୀ ଶିବମୂର୍ତ୍ତି ଦେଖିବାକୁ ମିଳେ । ସ୍ଥାନୀୟ ଆଦିବାସୀମାନେ ତାକୁ ସୂର୍ପଣଖା ମୂର୍ତ୍ତି ବୋଲି କହିଥାନ୍ତି । ସମ୍ପ୍ରତି ସେହି ମୂର୍ତ୍ତିକୁ ସଂରକ୍ଷିତ କରାଯାଇଛି ।

ସୀତାବିଞ୍ଜିର ସବୁଠାରୁ ଆକର୍ଷଣୀୟ ବସ୍ତୁ ହେଉଛି—ରାବଣଛାୟା । ଖଣ୍ଡିଏ ଭଗ୍ନ ପର୍ବତ ଉପରେ ବିରାଟକାୟ ପ୍ରସ୍ତର ଚଟାଣ ଆଶ୍ଚର୍ଯ୍ୟଜନକ ଭାବେ ଓହଳି ରହିଛି, ଯାହା ଏକ ପ୍ରାକୃତିକ ଆଶ୍ରୟସ୍ଥଳୀ ଅଟେ । ସେହି ଆଶ୍ରୟସ୍ଥଳୀରେ ଯେଉଁ ଉନ୍ନତ ଚିତ୍ରାଙ୍କନ ଦେଖିବାକୁ ମିଳେ, ତାହା ୪ର୍ଥ/୫ମ ଶତାବ୍ଦୀର ବୋଲି ନିରୂପଣ କରା-

ଯାଇଛି । ଚିତ୍ରଟିରେ ଜଣେ ରାଜପୁରୁଷ ହସ୍ତୀ ଉପରେ ବସି ହସ୍ତରେ ଅଙ୍କୁଶ ଓ ବାମହସ୍ତରେ ନୀଳକମଳ ଧାରଣ କରି ଯାତ୍ରା କରୁଛନ୍ତି । ଜଣେ ଅନୁଚର ଛତ୍ର ଉତ୍ତୋଳନ କରୁଛନ୍ତି । ହସ୍ତୀ ସମ୍ମୁଖରେ ଜଣେ ଅଶ୍ୱାରୋହୀ ଦ୍ରୁତଗତିରେ ଯାଉଥିବା ଦୃଶ୍ୟ ମଧ୍ୟ ଏହି ଚିତ୍ରରେ ଦେଖିବାକୁ ମିଳେ । ଚିତ୍ରାଙ୍କନ ତଳେ ବିଶାଭଞ୍ଜ ଲେଖାଥିବା ପଢ଼ିହୁଏ । ଏହି ଚିତ୍ରାଙ୍କନଙ୍କୁ ଗବେଷକମାନେ ଫ୍ରେସ୍କୋ ପେଣ୍ଟିଂ ବା ଟେମ୍‌ପରା ପେଣ୍ଟିଂ ଭାବେ ବର୍ଣ୍ଣନା କରନ୍ତି ।

ସୀତାବିଞ୍ଜିର ଚିତ୍ରକଳା ଓ ଧ୍ୱଂସାବଶେଷ କେବଳ କେନ୍ଦୁଝର ପାଇଁ ନୁହେଁ ବରଂ ସମଗ୍ର ରାଜ୍ୟ ପାଇଁ ଏକ ଗୌରବମୟ ଇତିହାସର ପରିଚୟ ଦେଇଥାଏ । ଏହି ସ୍ଥାନଟି କେବଳ ଦର୍ଶକ ବା ଭ୍ରମଣକାରୀଙ୍କ ପାଇଁ ନୁହେଁ, ପ୍ରତ୍ୟେକ ଜିଜ୍ଞାସୁ ମଣିଷ ପାଇଁ ଏହି ସ୍ଥାନଟି ଅବଶ୍ୟ ଦର୍ଶନୀୟ । ସୀତାବିଞ୍ଜିର ଅନତିଦୂରରେ କୃଷ୍ଣବର୍ଣ୍ଣ ଅକର୍ମ ଶିଳାରେ ଲିଖିତ ଅସଂଖ୍ୟ ଭଗ୍ନପ୍ରସ୍ତର ଦେଖିବାକୁ ମିଳେ, ଯାହାକି ଗବେଷକମାନଙ୍କ ପାଇଁ ଖୋରାକ ଯୋଗାଇଥାଏ ।

## ହାଣ୍ଡିଭଙ୍ଗା—

ଯୋଡ଼ା ବ୍ଲକ୍ ଅନ୍ତର୍ଗତ ବଳଦା ଗ୍ରାମପଞ୍ଚାୟତରେ ଥିବା କାଳିଆ ପର୍ବତରେ ହାଣ୍ଡିଭଙ୍ଗା ଜଳପ୍ରପାତ ଅବସ୍ଥିତ । ସୁନ୍ଦରଗଡ଼ ଜିଲ୍ଲାରୁ ପ୍ରବାହିତା ନିର୍ଝରଣୀ କାଳିଆ ପର୍ବତର ବକ୍ଷ ବିଦାରଣ କରି ଘର୍ଘର ନାଦରେ ୧୦୦ ଫୁଟ ଉଚ୍ଚରୁ ଜଳଧାର ଡେଇଁ-ପଡ଼ୁଛି, ପରେ ତାହା ନୟାଗଡ଼ଠାରେ ବୈତରଣୀ ନଦୀରେ ମିଶିଯାଇଛି ।

ହାଣ୍ଡିଭଙ୍ଗା ଜଳପ୍ରପାତର ପ୍ରାକୃତିକ ଶୋଭା, ନୈସର୍ଗିକ ଅରଣ୍ୟଶ୍ରୀ ଦର୍ଶକ-ମାନଙ୍କ ପାଇଁ ଅବଶ୍ୟ ଉପଭୋଗ୍ୟ । କେନ୍ଦୁଝରଠାରୁ ପଲାଶପଙ୍ଗା ବାଟଦେଇ ନୟାଗଡ଼ଠାରୁ ହାଣ୍ଡିଭଙ୍ଗାକୁ ଯିବାକୁ ମାତ୍ର ୫୨ କି.ମି. ।

## ଚକ୍ରତୀର୍ଥ—

ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳରୁ ସୃଷ୍ଟିହୋଇ କେନ୍ଦୁଝର ଦେଇ ପ୍ରବାହିତା ଶାଳନ୍ଦୀ ନଦୀର ତୀରଦେଶ ଅତ୍ୟନ୍ତ ମନଲୋଭା ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ । ବଉଳା ପର୍ବତଶ୍ରେଣୀ ମଧ୍ୟରେ ଥିବା ଏକ ପଥର କୂପକୁ 'ଚକ୍ରତୀର୍ଥ' କୁହାଯାଏ । ଲୋକମୁଖରୁ ଶୁଣାଯାଏ—ଭଗବାନ୍ ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ର ପ୍ରଭୁଙ୍କ ଆଦେଶରେ ତାଙ୍କର ପୁତ୍ର ପ୍ରଦ୍ୟୁମ୍ନର ମସ୍ତକ ଛେଦନ କରିସାରି, ମର୍ମାହତ ହୋଇ ପଥର କୂପ ଦେଇ ପାତାଳପୁରକୁ ଯାଇଥିଲେ । ତେଣୁ ଏହି ସ୍ଥାନଟି ପବିତ୍ର ସ୍ଥାନ ଭାବରେ ଖ୍ୟାତିଲାଭ କରିଛି । ପ୍ରତି ରଜସଂକ୍ରାନ୍ତି ଦିନ ଏଠାରେ ମେଳା ଅନୁଷ୍ଠିତ ହୁଏ ।

ଶ୍ରଦ୍ଧାଳୁ ଭକ୍ତମାନେ ଏହି କୁପଜଳରେ ସ୍ନାନତର୍ପଣ କରି ପିତୃପୁରୁଷଙ୍କ ଉଦ୍ଧାର କରିବା ପାଇଁ ଏଠାକୁ ଆସନ୍ତି ।

ଏହି ପର୍ବତଶ୍ରେଣୀର ପ୍ରାକୃତିକ ଶୋଭା ଅତ୍ୟନ୍ତ ରମଣୀୟ । ଉଚ୍ଚୁଳିତ ଶିଳା ଉପରେ ବହିଯାଉଥିବା ଜଳରାଶି ସ୍ଥାନେ ସ୍ଥାନେ ଜଳପ୍ରପାତ ସୃଷ୍ଟିକରି ପ୍ରକୃତିପ୍ରେମୀ ଦର୍ଶକଙ୍କ ମନ ହରଣ କରେ । ଏହି ସ୍ଥାନ ଜୈନ ଧର୍ମାବଲମ୍ବୀମାନଙ୍କର ଏକ ପ୍ରଧାନ ତୀର୍ଥକ୍ଷେତ୍ର ଭାବେ ପରିଚିତ । ଆନନ୍ଦପୁର ସହରଠାରୁ ଏହା ମାତ୍ର ୧୫ କି.ମି. ଦୂରରେ ଅବସ୍ଥିତ । ସେଠାରେ ଥିବା ଜୈନମୂର୍ତ୍ତିକୁ ସ୍ଥାନୀୟ ଲୋକେ 'ବଉଳାଶୁଣୀ ଦେବୀ' ଭାବେ ପୂଜା କରିଥାନ୍ତି ।

**ଭୀମକୁଣ୍ଡ—**

କେନ୍ଦୁଝର ସହର ଠାରୁ ପ୍ରାୟ ୬୦ କି.ମି. ଦୂର ଓ ସ୍ୱାମ୍ପାଟଣା ଠାରୁ ୧୫ କି.ମି. ଦୂରରେ ଅବସ୍ଥିତ ଭୀମକୁଣ୍ଡ । ବୈତରଣୀ ନଦୀ ଅଙ୍କାବଙ୍କା ବାଟଦେଇ ପାଟଣା ପରେ ଏକ ପାହାଡ଼ ସନ୍ଧିରେ ପ୍ରବେଶ କରିଛି । ତା' ପୂର୍ବରୁ କଙ୍କରିତ ଶଯ୍ୟାରେ ଜଳଧାରା ବହିଯାଇ ସମ୍ମୁଖରେ ଭେଟିଛି ଏକ ବୃହତ୍ ପାହାଡ଼ । ସେଇଠି ଜଳଧାରା ବାଧାପାଇ ଏକ ବୃହତ୍ ଗର୍ତ୍ତ ସୃଷ୍ଟି କରି ଦକ୍ଷିଣମୁଖୀ ହୋଇ ଏକ ସଂକୀର୍ଣ୍ଣ ଖୋଲା ସୁଡ଼ଙ୍ଗ ମଧ୍ୟ ଦେଇ ପ୍ରାୟ ୧୨ କି.ମି. ଦୂରକୁ ଗୁପ୍ତଭାବରେ ଘନ ଅରଣ୍ୟ ମଧ୍ୟରେ ବହିଯାଇଛି । ବର୍ଷାଦିନେ ବୃହତ୍ ପ୍ରସ୍ତରଖଣ୍ଡକୁ ବୈତରଣୀର ଖରସ୍ରୋତା ଜଳଧାରା ଭୟଙ୍କର ରୂପ ଧାରଣ କରି ଲମ୍ଫ ଦେଇଥାଏ । ଅତି ଉଚ୍ଚରୁ ପୁଣି ସେହି ଜଳ ନିମ୍ନରେ ଥିବା ପ୍ରସ୍ତର ଚଟାଣ ଉପରେ କଚୁଡ଼ି ହୋଇ ପଡୁଥିବାରୁ ସେଠାରେ ଭୟଙ୍କର ଘୋ-ଘୋ ଗର୍ଜନ ସୃଷ୍ଟି ହୁଏ । ବର୍ଷସାରା ବୈତରଣୀର ଜଳଧାରା ତୀବ୍ରଗତିରେ ସେହି ସଂକୀର୍ଣ୍ଣ ପଥରେ ଗତି କରୁଥାଏ, ଯାହା ଗ୍ରୀଷ୍ମ ଦିନେ ମଧ୍ୟ ଦର୍ଶକ ହୃଦୟରେ ଭୟ ସୃଷ୍ଟି କରେ । ରୂପରେ ଏବଂ ଶବ୍ଦରେ ଅତି ଭୟଙ୍କର ହୋଇ-ଥିବାରୁ ସମ୍ଭବତଃ ସେହି ଗର୍ତ୍ତକୁ 'ଭୀମକୁଣ୍ଡ' ନାମରେ ନାମିତ କରାଯାଇଛି । ସମ୍ପ୍ରତି ସେଠାରେ ଶିବ ମନ୍ଦିରଟିଏ ଗଢ଼ିଉଠିଛି । ମକର ମେଳାରେ ଜନସମାଗମ ହେବା ସ୍ୱାଭାବିକ କଥା । ଓଡ଼ିଶା ସରକାର ଏହି ସ୍ଥାନରେ ବୈତରଣୀ ଜଳକୁ ଅଟକାଇ ଜଳବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା କରିବା ପାଇଁ ଯୋଜନା ରଖିଛନ୍ତି । ପ୍ରକୃତିର ଗନ୍ତାଘର ଭାବେ ପରିଚିତ ଏଇ ଭୀମକୁଣ୍ଡକୁ ପ୍ରତିବର୍ଷ ହଜାର ହଜାର ଭ୍ରମଣକାରୀ ଦର୍ଶକ ଯାଇ ତାର ଭୀମକାନ୍ତ ରୂପ ଓ ସେ ସ୍ଥାନର ପ୍ରାକୃତିକ ଦୃଶ୍ୟକୁ ଉପଭୋଗ କରିଥାନ୍ତି ।

ଭୀମକୁଣ୍ଡକୁ ନେଇ ଅସଂଖ୍ୟ ପୌରାଣିକ ଆଖ୍ୟାନ ଶୁଣିବାକୁ ମିଳେ । ମହାଭାରତ ଯୁଗର ମହାବଳୀ ଭୀମ ବନବାସ ସମୟରେ ଏହି କୁଣ୍ଡରେ ସାନ

କରିଥିବା କଥା ସ୍ଥାନୀୟ ଲୋକେ ବିଶ୍ୱାସ କରନ୍ତି । ବୈତରଣୀ ପାପନାଶିନୀ ହୋଇ-ଥିବାରୁ ସ୍ନାନ କରିବା ପାଇଁ ଶ୍ରଦ୍ଧାଳୁ ଲୋକଙ୍କର ଆଗ୍ରହ ସୃଷ୍ଟି ହୋଇଥାଏ । ବିଭିନ୍ନ ସ୍ଥାନରୁ ବଣଭୋଜି ପାଇଁ ସ୍କୁଲ, କଲେଜ ପିଲା ମଧ୍ୟ ଏଠାକୁ ଆସିଥାନ୍ତି ।

## ଗୁଣ୍ଡିଚାଘାଗି :

ଘଟଗାଁଠାରୁ ହରିଚନ୍ଦନପୁର ଯିବା ବାଟରେ ଠିକ୍ ୭ କି.ମି. ପରେ ବାମକୁ ଯାଉଥିବା ରାସ୍ତା ୪ କି.ମି. ଯିବା ପରେ ଗୁଣ୍ଡିଚାଘାଗି ଜଳପ୍ରପାତ ପଡ଼େ । ବଣ-ସୁକୁଳିଆ ନାମକ ଗାଁଆଁ ପାଖରେ ଘନ ଅରଣ୍ୟ ମଧ୍ୟରେ ଏହି ରମଣୀୟ ଗୁଣ୍ଡିଚାଘାଗିର ଅସଂଖ୍ୟ ଜଳଧାରା ଦର୍ଶକମାନଙ୍କୁ ମୁଗ୍ଧ କରେ । ମୁସଳନଦୀ ଶରଗଡ଼ବାହାଲିରୁ ବାହାରି କିଛି ବାଟ ବୋହି ଗଲାପରେ ବଣସୁକୁଳିଆ ନିକଟରେ ହଠାତ୍ ପାହାଡ଼ ଉପରୁ ପ୍ରାୟ ୫୦ରୁ ୧୦୦ଫୁଟ ତଳକୁ ଖସିପଡ଼ୁଛି । ତା'ପରେ ଅତି ଗଭୀର ଗର୍ତ୍ତ ସୃଷ୍ଟି କରି ସେଇଠୁ ନଦୀ ଅତି ଭୟଙ୍କର ଶବ୍ଦ ସୃଷ୍ଟି କରି ତଳକୁ ବୋହିଯାଇଛି । ବଣଭୋଜି ପାଇଁ ଗୁଣ୍ଡିଚାଘାଗି ଅତି ଉତ୍ତମ ସ୍ଥାନ; କିନ୍ତୁ ସବୁସମୟରେ ସେ ନଦୀର ଜଳ ପିଇବାଯୋଗ୍ୟ ନଥାଏ ।

ଏହି ସମସ୍ତ ପ୍ରମୁଖ ପ୍ରାକୃତିକ ଶୋଭା-ସମ୍ପଦଭରା ଦର୍ଶନୀୟ ସ୍ଥାନଗୁଡ଼ିକ ବ୍ୟତୀତ କେନ୍ଦୁଝର ଜିଲ୍ଲାରେ ଆହୁରି ଅସଂଖ୍ୟ ଦର୍ଶନୀୟ ସ୍ଥାନ ରହିଛି । ସେଗୁଡ଼ିକ ମଧ୍ୟରେ ସିଠାଗୋଲା ଗ୍ରାମଠାରେ ଥିବା ଚନ୍ଦନଗିରି ପର୍ବତ, ସାଟହିରା ଗୁମ୍ଫା, ସୁଡ଼ଙ୍ଗ ଦ୍ୱାର ଏବଂ ଗୁମ୍ଫାଠାରେ ଖଚିତ ମୂଲ୍ୟବାନ ପ୍ରସ୍ତର ଦର୍ଶକର ମନ ହରଣ କରିଥାଏ ।

ପଣ୍ଡାପଡ଼ା ଥାନାର ୫ କି.ମି. ଦୂରରେ ଡକେଇତ ହୁଣ୍ଡି ନାମକ ପାହାଡ଼ରେ ଥିବା ଗୁମ୍ଫାଠାରେ ଦେବୀମୂର୍ତ୍ତି ବିଦ୍ୟମାନ । ସ୍ଥାନୀୟ ଲୋକେ ବିଶ୍ୱାସ କରନ୍ତି—ଏହା ଦସ୍ୟୁ ରତ୍ନାକର ବା ତାର ପୂର୍ବ-ବଂଶଧରମାନେ ତାଙ୍କର ଡକେଇତି କରିଥିବା ମୂଲ୍ୟବାନ ଜିନିଷ ଏଇ ଗୁମ୍ଫାରେ ଲୁଚାଇ ରଖିଥିଲେ ।

ସୀତାବିଞ୍ଜିର ଉତ୍ତରରେ ଥିବା ପିପିଲିଆ ଗ୍ରାମକୁ ଲାଗିଥିବା ଠାକୁରାଣୀ ପାହାଡ଼ର ଶୀର୍ଷଦେଶରେ ବୃହତ୍ ଗୋଲାକାର ଚନ୍ଦନ ପେଡ଼ିସଦୃଶ ପଥରଖଣ୍ଡ ଥିବାରୁ ଲୋକେ ତାକୁ ଦେଖିବାକୁ ଯାଉଥା'ନ୍ତି । ସେହି ପାହାଡ଼ରୁ ବିଭିନ୍ନ ବର୍ଣ୍ଣର ବର୍ତ୍ତୁଳାକାର ପ୍ରସ୍ତରଖଣ୍ଡ ସଂଗ୍ରହ କରାଯାଏ । ଏହି ପାହାଡ଼ରୁ ସ୍ୱର୍ଣ୍ଣରେଣୁ ଝରୁଥିବାର ଶୁଣାଯାଏ । ତେଣୁ ଏହାକୁ 'ସ୍ୱର୍ଣ୍ଣଝର' ପାହାଡ଼ କୁହାଯାଏ ।

ଏହାର ପୂର୍ବଭାଗରେ 'ଜଇରାସଣ୍ଢ' ପାହାଡ଼ ଅବସ୍ଥିତ । ଏଠାରେ ପଥର ଦେହରେ କେତେକ ଅଭିଲେଖ ଥିବାର ଲକ୍ଷ୍ୟ କରାଯାଏ । ସେଠାରେ ଥିବା ଗୁମ୍ଫା ଭିତରକୁ ଯିବାକୁ ସୁଡ଼ଙ୍ଗ ପଥ ଅଛି ।

ସୀତାବିଞ୍ଜିର ଘୋଡ଼ାଗଡ଼ଠାରେ ଥିବା ଫୁଲବାଡ଼ି ନାମକ ସ୍ଥାନରେ ଷଣ୍ଢ-ବଳଦ ନାମରେ ଦୁଇଟି ପଥର ଦେଖିବାକୁ ମିଳେ । ସେଇ ପଥର ହେଉଛି କାଳଞ୍ଜର ନଦୀର ଉତ୍ପତ୍ତି ସ୍ଥଳ । ଲୋକମୁହଁରୁ ଶୁଣାଯାଏ—ଏହା ମହର୍ଷି ବାଲ୍ମୀକିଙ୍କ ତପୋବନ ଥିଲା ।

କେନ୍ଦୁଝରରେ ଅବସ୍ଥିତ ଗନ୍ଧମାର୍ଦ୍ଦନ ପର୍ବତର ଶୀର୍ଷଦେଶରେ ଥିବା ସୁବିସ୍ତୃତ ସମତଳ ଚଟାଣ ଉପରେ ସାତୋଟି ପୁଷ୍କରଣୀ ଦେଖିବାକୁ ମିଳେ । ଏହାକୁ ସପ୍ତ-ପୁଷ୍କରଣୀ କୁହାଯାଏ । ସାତକର୍ଣ୍ଣି ଋଷିଙ୍କର ଏଠାରେ ଆଶ୍ରମ ଥିବା କଥା ଅନୁମାନ କରାଯାଏ । ଗନ୍ଧମାର୍ଦ୍ଦନର ବକ୍ଷଦେଶରେ ଯେଉଁ ଗୁମ୍ଫାଗୁଡ଼ିକ ରହିଛି, ସେଗୁଡ଼ିକ ମଧ୍ୟରୁ ବ୍ୟାଘ୍ରଗୁମ୍ଫା ସର୍ବପ୍ରଧାନ ଅଟେ । ଏହି ଗୁମ୍ଫାରେ ଚତୁର୍ଭୁଜ ନାରାୟଣ ମୂର୍ତ୍ତି ବିଦ୍ୟମାନ ।

କେନ୍ଦୁଝରର ବାରବିଲ ଥାନା ଅନ୍ତର୍ଗତ ଜଜପଙ୍ଗି ଗ୍ରାମପଞ୍ଚାୟତ ଅନ୍ତର୍ଗତ ଫୁଲ କଅଁଳେଇ ଗ୍ରାମରେ ବୈତରଣୀ ନଦୀ ଘାଟକୁ ଖଲଚବୁଡ଼ ଘାଟ କୁହାଯାଏ । ଏଠାରେ କେତେକ ପ୍ରସ୍ତର ଯୁଗର ମୂର୍ତ୍ତି ମିଳାଛି । ଏହା ଏକ ଗ୍ରାମ୍ୟ ପର୍ଯ୍ୟଟନ କେନ୍ଦ୍ର ଭାବେ ପରିଚିତ ।

କେୟାଁଝପୁର ଗ୍ରାମପଞ୍ଚାୟତରେ କପିଳମୁନିଙ୍କର ଆଶ୍ରମ କଥା ଲୋକମୁଖରୁ ଶୁଣାଯାଏ । ପ୍ରାକୃତିକ ରମଣୀୟ ଦୃଶ୍ୟ ତଥା ବୃହତ୍ ପ୍ରସ୍ତର ପୁଷ୍କରଣୀ, କପିଳେଶ୍ୱର ଚଟାଣ, ସିନ୍ଦୁରପେଟି ନାମକ ଦେବୀଶାଳ ଅବଶ୍ୟ ଦର୍ଶନୀୟ ।

**କାନଝାରୀ ଡ୍ୟାମ୍—**

ଜଳସେଚନର ସୁବିଧା ପାଇଁ କେନ୍ଦୁଝର ସହରଠାରୁ ୧୨ କି.ମି. ଦୂର ଗୋପାଳପୁର ନିକଟରେ କାଣିଞ୍ଜର ନଦୀକୁ ମଦୁରପଙ୍ଗି କାଳିଆବେଡ଼ା ଚକଠାରେ ବନ୍ଧାଯାଇ ଅତି ସୁନ୍ଦର ପରିବେଶ ସୃଷ୍ଟି ହୋଇଛି । ଏହି ମାଟିବନ୍ଧର ଉଚ୍ଚତା ୨୧.୫ ମିଟର । ଏଥିରେ ୭ଟି ଛିଲ୍‌ଓ୍ୱେ ରହିଛି । ଏହି ଜଳଭଣ୍ଡାରଟି ପ୍ରାୟ ୩୫୮ ବର୍ଗ କିଲୋମିଟର ସ୍ଥାନ ମାଡ଼ି ବସିଛି । ସ୍ଥାନଟି ବଣଭୋଜି ପାଇଁ ଉପଯୁକ୍ତ ହୋଇଥିବାରୁ ବିଭିନ୍ନ ଅଞ୍ଚଳରୁ ପ୍ରକୃତିପ୍ରେମୀ ଦର୍ଶକ ଏଠାକୁ ଆସିଥା'ନ୍ତି ।

( 'କାଣିଝର' ଶବ୍ଦର ଅପଭ୍ରଂଶ କ୍ରମେ ଏହି ନଦୀବନ୍ଧ 'କାଂଝାରୀ' ନାମରେ ଅଭିହିତ ହୁଏ । )



# କେନ୍ଦୁଝର ସଦର ଠାରୁ ଦର୍ଶନୀୟ ସ୍ଥାନଗୁଡ଼ିକର ଦୂରତା

| କେଉଁଠାରୁ | କେଉଁଠାକୁ (କି.ମି.) | ଦର୍ଶନୀୟ କାହିଁକି ? |
|---|---|---|
| କେନ୍ଦୁଝରରୁ | ହାଣ୍ଡିଭଙ୍ଗା—୫୨ | (ଜଳପ୍ରପାତ) |
| | ମୁର୍ଗା ମହାଦେବ—୭୦ | (ତୀର୍ଥସ୍ଥଳୀ) |
| | ଖଣ୍ଡାଧାର—୫୫ | (ଜଳପ୍ରପାତ) |
| | ଗୋନାସିକା—୩୦ | (ବୈତରଣୀ ଉତ୍ପତ୍ତିସ୍ଥଳ) |
| | ବଡ଼ ଘାଗରା—୧୦ | (ଜଳଭଣ୍ଡାର ବିଦ୍ୟୁତକେନ୍ଦ୍ର) |
| | ସାନ ଘାଗରା—୨ | (ଜଳପ୍ରପାତ) |
| | ସୀତାବିଞ୍ଜି—୩୦ | (ଶିଳାଲିପି, ଶୈଳଚିତ୍ର) |
| | ଘଟଗାଁ—୪୫ | (ଶକ୍ତିପୀଠ) |
| | ଗୁଣ୍ଡିଚ୍ଚା ଘାଗି—୫୭ | (ଜଳପ୍ରପାତ) |
| ଘଟଗାଁରୁ | ଧାନବେଣୀ—୧୭ | (ଶୈବପୀଠ) |
| | ହାଣ୍ଡିଭଙ୍ଗା—୯୭ | (ଜଳପ୍ରପାତ) |
| | ମୁର୍ଗା ମହାଦେବ—୧୧୫ | (ଶୈବପୀଠ) |
| | ଖଣ୍ଡାଧାର—୧୧୦ | (ଜଳପ୍ରପାତ) |
| | ଗୋନାସିକା—୭୫ | (ବ୍ରହ୍ମେଶ୍ୱର ମନ୍ଦିର) |
| | ବଡ଼ ଘାଗରା—୫୫ | (ଜଳଭଣ୍ଡାର) |
| | ସାନ ଘାଗରା—୫୦ | (ଜଳପ୍ରପାତ) |
| | ସୀତାବିଞ୍ଜି—୨୫ | (ଲବକୁଶଙ୍କ ଜନ୍ମସ୍ଥାନ) |
| | ଗୁଣ୍ଡିଚ୍ଚଘାଗି—୧୨ | (ଜଳପ୍ରପାତ) |

□

# କେନ୍ଦୁଝରର ଦେବଦେବୀ

**ଘଟଗାଁ ତାରିଣୀ—**

କେନ୍ଦୁଝରର ସଦର ଠାରୁ ଆନନ୍ଦପୁର ରାସ୍ତାରେ ୪୫ କି.ମି. ଦୂରରେ ପବିତ୍ର ଦେବୀପୀଠ ମା' ତାରିଣୀଙ୍କ ଘଟଗାଁ' ଅବସ୍ଥିତ । ଲୋକମୁଖରୁ ଶୁଣାଯାଏ—ରାଜା ଗୋବିନ୍ଦ ଭଞ୍ଜ କାଞ୍ଚି ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ମାଆ ତାରିଣୀଙ୍କୁ ନେଇଆସି ନିଜ ରାଜ୍ୟରେ ପ୍ରତିଷ୍ଠା କରିଥିଲେ । ସେହିଦିନଠୁ କେନ୍ଦୁଝର ରାଜ୍ୟର ଜନସାଧାରଣ ଘଟଗାଁ ତାରିଣୀଙ୍କୁ ଇଷ୍ଟଦେବୀ ଭାବେ ପୂଜା କରି ଆସୁଛନ୍ତି । ଏଠାରେ ଅନ୍ୟ ସ୍ଥାନମାନଙ୍କ ଭଳି ବ୍ରାହ୍ମଣ, ପୂଜାପଣ୍ଡା ସେବାପୂଜା କରନ୍ତି ନାହିଁ । କନ୍ଧ ସମ୍ପ୍ରଦାୟର ପୂଜକମାନେ ଦେବୀଙ୍କୁ ଶାବରୀ ମନ୍ତ୍ରରେ ଆବାହନ କରି ପୂଜା କରିଥାନ୍ତି ।

ଦୁଃଖ-ବିପଦରୁ ତାରଣ କରୁଥିବାରୁ ଏହି ଦେବୀଙ୍କୁ ତାରିଣୀ ବୋଲି କୁହାଯାଏ । ଏହା ଏକ ଶକ୍ତିପୀଠ ଭାବେ ସମ୍ପ୍ରତି ସମଗ୍ର ରାଜ୍ୟବାସୀଙ୍କୁ ଆକର୍ଷିତ କରିପାରିଛି । ନଡ଼ିଆ ହେଉଛି—ମାଆ ତାରିଣୀଙ୍କର ଅତି ପ୍ରିୟ ବସ୍ତୁ । ଭକ୍ତମାନେ ମାଆଙ୍କ ନାମରେ ନଡ଼ିଆ ବସାଇ ବିଭିନ୍ନ ଶୁଭକାମ ଆରମ୍ଭ କରନ୍ତି । ମାନସିକ କରି ଶ୍ରଦ୍ଧାଳୁ ଭକ୍ତ ଦୂର-ଦୂରାନ୍ତରୁ ମାଆଙ୍କ ପାଖକୁ ନଡ଼ିଆ ପଠାଇଥା'ନ୍ତି । ପୂର୍ବରୁ ଘଞ୍ଚ ଅରଣ୍ୟ ମଧ୍ୟରେ ଏକ ଖୋଲା ଜାଗାରେ ମାଆଙ୍କର ପୂଜା ଚାଲିଥିଲା । ସମ୍ପ୍ରତି ପୂଜା କମିଟି ଗଠିତ ହୋଇ ଦେବୀଙ୍କ ପୀଠର ତ୍ୱରାନ୍ୱିତ ଉନ୍ନତି ସାଧନ କରାଯାଇଛି । ପୂଜା-ପୀଠର ଚତୁଃପାର୍ଶ୍ୱରେ ସୁନ୍ଦର ଗୃହାଦି, ମୁଖଶାଳା ଓ ବିଶ୍ରାମଗାର ନିର୍ମାଣ କରାଯାଇଛି । ଏହି ପୀଠ ପାଇଁ ଘଟଗାଁ ଏକ ସହରରେ ପରିଣତ ହୋଇଯାଇଛି । ବିଭିନ୍ନ ସ୍ଥାନରୁ ଶ୍ରଦ୍ଧାଳୁ ଭକ୍ତ ଏଠାକୁ ଆସି ମାଆଙ୍କୁ ଦର୍ଶନ କରି ଆତ୍ମସନ୍ତୋଷ ଲାଭ କରିଥାଆନ୍ତି ।

## ଶ୍ରୀ ଶ୍ରୀ ବଳଦେବଜୀଉ—

ପ୍ରାଚୀନ କେନ୍ଦୁଝର ରାଜ୍ୟର ଇଷ୍ଟ ଦେବତା ଭାବେ ଶ୍ରୀ ଶ୍ରୀ ବଳଦେବଜୀଉ ପୂଜା ପାଇଆସୁଛନ୍ତି । କେନ୍ଦୁଝରଗଡ଼ଠାରେ ନିର୍ମିତ ବୃହତ୍ ମନ୍ଦିରରେ ମହାପ୍ରଭୁ ଶ୍ରୀ ଶ୍ରୀ ବଳଦେବଜୀଉ ଓ ସାନଭାଇ ଶ୍ରୀ ଜଗନ୍ନାଥ ଓ ଭଉଣୀ ସୁଭଦ୍ରା ପୂଜା ପାଆନ୍ତି । ଏହି ମନ୍ଦିରଟି ୧୬୭୧ ମସିହାରେ ରାଜା ଲକ୍ଷ୍ମୀନାରାୟଣ ଭଞ୍ଜଙ୍କ ଦ୍ୱାରା ନିର୍ମାଣ କରା-ଯାଇଥିଲା । ଏହି ତ୍ରିମୂର୍ତ୍ତିଙ୍କ ମଧ୍ୟରୁ ଶ୍ରୀ ଜଗନ୍ନାଥ ଓ ସୁଭଦ୍ରାଙ୍କ ମୂର୍ତ୍ତି ଶ୍ରୀକ୍ଷେତ୍ରରୁ ଅଣାଯାଇଛି ଏବଂ ଆନନ୍ଦପୁର ସବ୍‌ଡିଭିଜନର ବଉଁଶପାଟରୁ ଶ୍ରୀ ଶ୍ରୀ ବଳଦେବଜୀଙ୍କ ବିଗ୍ରହକୁ ଆଣି ଏଠାରେ ସ୍ଥାପନା କରାଯାଇଛି । ଏହି ବୃହତ୍ ମନ୍ଦିର ଶ୍ରୀ ଶ୍ରୀ ବଳଦେବ ଜୀଉଙ୍କ ନାମ ଅନୁସାରେ ନାମିତ ହୋଇଛି । ପୁରୀ ଶ୍ରୀ ଜଗନ୍ନାଥଙ୍କ ପରି ଏଠାରେ ନବକଳେବର ହୁଏନାହିଁ; କିନ୍ତୁ ପୁରୀ ଶ୍ରୀମନ୍ଦିରର ନିୟମ ଅନୁସାରେ ସମସ୍ତପ୍ରକାର ପୂଜା-ଅର୍ଚ୍ଚନା କରାଯାଏ । ପ୍ରତି ବର୍ଷ ଏଠାରେ ଏକ ବୃହତ୍ ରଥ ଉପରେ ବସି ତ୍ରିମୂର୍ତ୍ତି ବଡ଼ଦାଣ୍ଡରେ ଗୁଣ୍ଡିଚା ଯାତ୍ରା କରିଥାଆନ୍ତି । ଏହି ରଥ ପାଇଁ ଆବଶ୍ୟକ ଦଉଡ଼ିକୁ ସ୍ଥାନୀୟ ଭୂୟାଁମାନେ ଯୋଗାଡ଼ କରି ଦେଇଥାଆନ୍ତି ।

ଏହି ମନ୍ଦିର ମଧ୍ୟରେ ଥିବା ବିଗ୍ରହମାନଙ୍କର ବିଶେଷତ୍ୱ ହେଲା—ମାଆ ସୁଭଦ୍ରାଙ୍କ ବର୍ଣ୍ଣ ଶ୍ରୀକ୍ଷେତ୍ରର ସୁଭଦ୍ରାଙ୍କ ଭଳି ହଳଦୀମୁହାଁ ନୁହଁନ୍ତି, ବରଂ ତନ୍ତ୍ରମତ ଭାବନାରେ ଦେବୀ ସୁଭଦ୍ରା କେନ୍ଦୁଝରରେ ରକ୍ତବର୍ଣ୍ଣା ।

## କୁଶଳେଶ୍ୱର—

ଆନନ୍ଦପୁର ଶୈଳଙ୍କ ଛକଠାରୁ ପ୍ରାୟ ଦଶ କି.ମି. ଦୂର ଦେଓଗାଁରେ ଅବସ୍ଥିତ ମହାଦେବ କୁଶଳେଶ୍ୱରଙ୍କ ମନ୍ଦିର । ମନ୍ଦିର ପାଖ ଦେଇ ବହିଯାଉଛି—କୁଶଲ ବା କୁଶେଇ ନଦୀ । ଗ୍ରାମ ଓ ମନ୍ଦିରକୁ ସୁରକ୍ଷା ଦେବା ଉଦ୍ଦେଶ୍ୟରେ ନିର୍ମିତ ହୋଇଛି ସୁଦୃଢ଼ ପଥର ବନ୍ଧ । ଶାନ୍ତ, ନିମନ୍ଦ, ପ୍ରାକୃତିକ ଶୋଭାରାଜି ଗ୍ରାମ୍ୟ ପରିବେଶରେ ପ୍ରତିଷ୍ଠିତ ଏହି କୁଶଳେଶ୍ୱର ମନ୍ଦିରଟି ଅତି ପ୍ରାଚୀନ । ରାଜା ଯଯାତିକେଶରୀ ଏହାକୁ ନିର୍ମାଣ କରାଇଥିଲେ । ଏଠାରେ ପୂଜିତା ଭୈରବୀ ମୂର୍ତ୍ତି ବୌଦ୍ଧଯୁଗର ବୋଲି ଅନୁମାନ କରାଯାଏ । କେନ୍ଦୁଝରର ରାଜା ଧନୁର୍ଜୟ ଭଞ୍ଜ ଏହି ମନ୍ଦିରର ମରାମତି କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ କୁଶେଇ ନଦୀର ପଥର ବନ୍ଧ ନିର୍ମାଣ କରିଥିଲେ । ଏହି ମନ୍ଦିରଟି ଯେଭଳି ପ୍ରାଚୀନ, ସେହିଭଳି ସୁଖ୍ୟାତ । ଅସଂଖ୍ୟ ଭକ୍ତ ଓ ପର୍ଯ୍ୟଟକ ଏଠାକୁ ନିୟମିତ ଆସନ୍ତି ।

## ସିଦ୍ଧମଠ—

ପୁରୁଣା କେନ୍ଦୁଝର ସହର ବା ଶ୍ରୀ ଶ୍ରୀ ବଳଦେବଜୀଉଙ୍କ ମନ୍ଦିରର ଦକ୍ଷିଣ ପଶ୍ଚିମ କୋଣରେ ଗୋବରା ଓ ଚୂଲିଆ ପାହାଡ଼ ଅବସ୍ଥିତ । ଏହି ପାହାଡ଼ର ପାଦ-

ଦେଶରେ ବଭିନ୍ନ ବୃକ୍ଷରାଜି ସୁନ୍ଦର ପରିବେଶ ମଧ୍ୟରେ ସିଦ୍ଧମଠ ଅବସ୍ଥିତ । ସେଇଠି ସିଦ୍ଧ ଜଗନ୍ନାଥ, ସିଦ୍ଧକାଳୀ ଓ ସିଦ୍ଧ ମହାବୀର ହନୁମାନ କେଉଁ ଯୁଗରୁ ପୂଜା ପାଇଆସୁଛନ୍ତି, ତାର ହିସାବ ନାହିଁ ।

ସିଦ୍ଧକାଳୀ ହେଉଛନ୍ତି—ସିଦ୍ଧମଠର ଅଧିଷ୍ଠାତ୍ରୀ ଦେବୀ ତଥା ସର୍ବପ୍ରାଚୀନ ପ୍ରତିଷ୍ଠିତା ପ୍ରତିମା । ବିଶ୍ୱାସ କରାଯାଏ—ଅଷ୍ଟମ ଶତାବ୍ଦୀରେ ଏହି ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା । କେନ୍ଦୁଝରର ରାଜାମାନେ ଏହି ଦେବୀଙ୍କୁ ପୂଜା କରି ଯୁଦ୍ଧଯାତ୍ରା ଅନୁକୂଳ କରୁଥିଲେ । ପ୍ରତ୍ୟେକ ଅମାବାସ୍ୟା, କାଳୀପୂଜା ଓ ଦଶହରାବେଳେ ଏଠାରେ ବିଶେଷ ପୂଜା ହୁଏ । ଏହି ସ୍ଥାନକୁ ଏକ ମୁଖ୍ୟ ତନ୍ତ୍ରପୀଠ ଭାବେ ଗ୍ରହଣ କରାଯାଏ ।

ସଂପ୍ରତି ସିଦ୍ଧମଠ ନିକଟରେ ସରକାରଙ୍କ ଉଦ୍ୟାନ ବିଭାଗ ଓ କୃଷି ବିଭାଗ ତରଫରୁ ଔଷଧ ବୃକ୍ଷ ଓ ଫଳବୃକ୍ଷ ରୋପଣ କରାଯାଇଛି । ସିଦ୍ଧମଠକୁ ଆକର୍ଷଣୀୟ କରିବା ପାଇଁ ସେଠାରେ କେତେକ ଉନ୍ନୟନ କାର୍ଯ୍ୟ ଆରମ୍ଭ ହୋଇଛି । ଭଜନ ମଣ୍ଡପ ସେଥିମଧ୍ୟରୁ ଗୋଟିଏ ।

**ଗଡ଼ଚଣ୍ଡୀ—**

ଆନନ୍ଦପୁର ସବ୍‌ଡିଭିଜନର ଛେନାପଦି ଛକଠାରୁ ୮ କି.ମି. ଦୂରରେ ଗଡ଼ଚଣ୍ଡୀ ମନ୍ଦିର ସୁନ୍ଦରୀପାଳଠାରେ ଅବସ୍ଥିତ । ଏକ ସୁନ୍ଦର ଗୁମ୍ଫା ମଧ୍ୟରେ ଅବସ୍ଥିତ ଏହି ମନ୍ଦିରରେ ଗଡ଼ଚଣ୍ଡୀ ପୂଜା ପାଉଛନ୍ତି । ସ୍ଥାନୀୟ ଯୁବପରିଷଦର ଅଧିକ୍ଷମାନେ ଏହାର ପରିଚାଳନା ଦାୟିତ୍ୱ ବହନ କରିଛନ୍ତି । ଗଡ଼ଚଣ୍ଡୀ ମନ୍ଦିର ନିକଟରେ ଆଉ ଯେଉଁ ଗୁରୁତ୍ୱପୂର୍ଣ୍ଣ ତଥା ଦର୍ଶନୀୟ ସ୍ଥାନ ଅଛି, ସେଗୁଡ଼ିକ ହେଲା—

(୧) ବାଘଗୁମ୍ଫା—(ସୁଡ଼ଙ୍ଗ)-୧ କି.ମି. ଦୂର ।
(୨) ଧବଳୀ କୁଣ୍ଡ
(୩) ଦେବସଭା ମଣ୍ଡପ
(୪) ସ୍ୱର୍ଗାରୋହଣ ପଥ
(୫) ବନଦୁର୍ଗାଙ୍କ ବିଜେସ୍ଥଳୀ—୧ କି.ମି. ଦୂର
(୬) ଆକାଶଗଙ୍ଗା ତୀର୍ଥ—୨½ କି.ମି. ଦୂର
(୭) ଯୋଗାଶ୍ରମ
(୮) ପ୍ରାଚୀନ ବୌଦ୍ଧ ଓ ଜୈନ ପୀଠସ୍ଥଳୀ ।

## କେନ୍ଦୁଝରରେ ଶିବପୂଜା—

ଅସନପାଟରୁ ପ୍ରାପ୍ତ ନଟରାଜ ମୂର୍ତ୍ତି ଓ କେନ୍ଦୁଝର ସିଦ୍ଧମଠରେ ବଜେ ଶ୍ରୀ ଏକାମ୍ର ବନବାସୀଙ୍କ କମଣ୍ଡଳୁ ପାଷାଣପ୍ରତିମା ଗବେଷକମାନଙ୍କୁ ଚମତ୍କୃତ କରିଥାଏ । ଏଠାରେ ଶିବମୂର୍ତ୍ତି ପୂଜା ପ୍ରାଚୀନ ଯୁଗରୁ ହୋଇଥିବା କଥା—ଏଥିରୁ ପ୍ରମାଣିତ ହୁଏ । ବୈତରଣୀର ଉତ୍ପତ୍ତିସ୍ଥଳରେ ବ୍ରହ୍ମେଶ୍ୱରଙ୍କଠାରୁ ଆରମ୍ଭ କରି ବୈତରଣୀ କୂଳେ କୂଳେ ଅସଂଖ୍ୟ ଶିବ ମନ୍ଦିର ପ୍ରତିଷ୍ଠିତ ହୋଇଛି, ଯାହାକୁ କୋଶଲଙ୍ଗ କୁହାଯାଏ । ଅନ୍ୟ ଶ୍ରେଷ୍ଠ ବଡ଼ ନଦୀ ଓ ଝରଣା କୂଳରେ ମଧ୍ୟ ଶିବ ମନ୍ଦିର ପ୍ରତିଷ୍ଠିତ ହୋଇଛନ୍ତି । ସେଗୁଡ଼ିକ ମଧ୍ୟରୁ ପ୍ରମୁଖ ମହାଦେବ ମନ୍ଦିର ହେଲା—

ଗୁପ୍ତଗଙ୍ଗା—ବ୍ରହ୍ମେଶ୍ୱର
ଦେବଝର—ଧବଳେଶ୍ୱର (ମୁର୍ଗା ମହାଦେବ)
ଦେଓଗାଁ—କୁଶଳେଶ୍ୱର
ସତ୍ତାଝର—ଗୁପ୍ତେଶ୍ୱର
ଶୁଆକାଟୀ—ଘାଟେଶ୍ୱର
ବାଂଶପା—ବଣେଶ୍ୱର ଓ କପିଳେଶ୍ୱର
ଯାଜା—ବାଣେଶ୍ୱର
ନୟାଗଡ଼—ମୁକ୍ତେଶ୍ୱର
ଚମ୍ପକପୁର—ଶିଖରେଶ୍ୱର
ରାମତୀର୍ଥ—ରାମେଶ୍ୱର
ଚମ୍ପୁଆ—ଚନ୍ଦ୍ରଶେଖର
ଦୋମୁହାଣି—କେଶରୀକୁଣ୍ଡ,
ଜ୍ୟୋତପୁର—କୋଶଲଙ୍ଗ
ରାଜନଗର—ଶୀତଳେଶ୍ୱର ଓ ଭୁବନେଶ୍ୱର ମହେଶ
ପାଟଣା—ଆନନ୍ଦେଶ୍ୱର
ଏରେଣ୍ଡ୍ରଇ—ଜଳେଶ୍ୱର
ଖିମକୁଣ୍ଡ—ମହାଦେବ
ଆନନ୍ଦପୁର (ନୁଆବାଲି)—ଝାଡ଼େଶ୍ୱର

ଆନନ୍ଦପୁର—ଆନନ୍ଦେଶ୍ୱର ଓ ଉତ୍ତରେଶ୍ୱର
ବଞ୍ଚୋ—ଦଟେଶ୍ୱର
ଶିବନାରାୟଣପୁର—ପର୍ବତେଶ୍ୱର ଶଙ୍କରେଶ୍ୱର
ଫକୀରପୁର—ବାଲୁଙ୍କେଶ୍ୱର
ଟୁକୁଣା—କୁଣ୍ଡେଶ୍ୱର
ହାବଳେଶ୍ୱର—ହେମଳେଶ୍ୱର
ଓଡ଼ପଡ଼ା—ଶିବ
ଖଡ଼ିକୁଣ୍ଡ—ସ୍ୱପ୍ନେଶ୍ୱର
ତରବା—ଦରେଶ୍ୱର
ପଥିହରା—କୁଶଳେଶ୍ୱର
ସୁଲଣ—ସୁବର୍ଣ୍ଣେଶ୍ୱର, ଶଙ୍କରେଶ୍ୱର
ଷଡ଼ଙ୍ଗ—ଶିଖରେଶ୍ୱର
ଟିଲୋ—ସିଦ୍ଧେଶ୍ୱର
ହାଟଡିହ—ହଟକେଶ୍ୱର
ସାଇଁକୂଳ—ଗଣେଶ୍ୱର
ଲକ୍ଷ୍ମଣପୁର—ସର୍ପେଶ୍ୱର
ଇଷଳା—ଧବଳେଶ୍ୱର
ଧ୍ରୁପଦା—ଆଖଣ୍ଡଳେଶ୍ୱର
କେନ୍ଦୁଝରଗଡ଼—ପୋରସୁନ୍ଦ ମହାଦେବ

ନଳାଘାଟ—ନଳା ମହାଦେବ
(ଲକ୍ଷ୍ମୀପାଦ ପାହାଡ଼ ପାଦଦେଶ)
ଗୁଆବାଡ଼—ଗୁଆମାଳ ମହେଶ
ରାଜପ୍ରାସାଦ ବଡ଼ଦ୍ୱାର—
ମୁକ୍ତେଶ୍ୱର
କରଣ ସାହି—ପିଣ୍ଡିକେଶ୍ୱର
ବଡ଼ଶାସନ—ବାଲୁଙ୍କେଶ୍ୱର
ବୋଦାପଳସା—ଚନ୍ଦ୍ରଶେଖର
ବଣ୍ଡୁଆଁ—ଘୋଷେଶ୍ୱର
ବଳଦେବ ଜାଉ ମନ୍ଦିର—
ବାଣେଶ୍ୱର ଓ ଗୁପ୍ତେଶ୍ୱର
ସିଦ୍ଧମଠ—ସିଦ୍ଧ ମହାଦେବ
ମୁରୁସୁର—ଉତ୍ତରେଶ୍ୱର
ହାରକଳା—ଗୁପ୍ତେଶ୍ୱର
ଖଣ୍ଡାଧାର—ନୀଳକଣ୍ଠେଶ୍ୱର
କେନ୍ଦୁଝରଗଡ଼—ପଞ୍ଚ ମହେଶ,
ପଞ୍ଚବକ୍ତ୍ର
ତରିଗ୍ରାମ—ବାଣେଶ୍ୱର
ବରହଟିପୁର—ନୀଳକଣ୍ଠେଶ୍ୱର
ଧାନବେଣୀ ପାହାଡ଼—ମହାଦେବ
ଦେଉଳି—ମହାଦେବ
ତଳୁଆ—ଧବଳେଶ୍ୱର
ଝାଙ୍ଗର ପଡ଼ିଆ—କପିଳେଶ୍ୱର
ଝାଙ୍ଗର ବନ୍ଦଳା—ଝାଡ଼େଶ୍ୱର
ଉଦୟପୁର—ଚନ୍ଦ୍ରଶେଖର
ବଡ଼ବିଲ—ହରିହର
ସିଦ୍ଧମଠ—ବନବିହାରୀ
ଧାନବେଣୀ—ଧନେଶ୍ୱର
ରାଇସୁଆଁ—କାନ୍ଧ ମହାଦେବ
ମହୁରି—ଲିଙ୍ଗଳେଶ୍ୱର

ଏହି ମନ୍ଦିର ବ୍ୟତୀତ ଜିଲ୍ଲାରେ ଥିବା ବିଭିନ୍ନ ବ୍ରାହ୍ମଣ ଶାସନରେ ବିଭିନ୍ନ ନାମଧାରୀ ଶିବ ମନ୍ଦିରମାନ ପୂଜା ପାଇଆସୁଛନ୍ତି । ନିକଟ ଅତୀତରେ ନୂତନ ଭାବେ ଗଢ଼ି ଉଠୁଥିବା ବସ୍ତି ଓ ପଡ଼ାମାନଙ୍କରେ ମଧ୍ୟ ଅସଂଖ୍ୟ ଶିବମନ୍ଦିର ପ୍ରତିଷ୍ଠିତ ହେବାରେ ଲାଗିଛି । ଏଥିରୁ ଅନୁମିତ ହୁଏ, ପ୍ରାଚୀନଯୁଗରୁ ସମଗ୍ର କେନ୍ଦୁଝର ଜିଲ୍ଲା ଏକ ଶୈବପୀଠରେ ପରିଣତ ହୋଇଥିଲା ।

## ଦେବୀପୂଜା—

କେନ୍ଦୁଝରର ଘଟଗାଁ' ତାରିଣୀପୀଠ ଆଜି ସମଗ୍ର ରାଜ୍ୟରେ ବିଖ୍ୟାତ ଦେବୀପୀଠ ଭାବରେ ସୁଖ୍ୟାତି ଅର୍ଜନ କରିଛି । ସିଦ୍ଧମଠର ସିଦ୍ଧକାଳୀଙ୍କ ବିଷୟରେ ସ୍ୱତନ୍ତ୍ର ଆଲୋଚନା କରାଯାଇଛି ।

ଘଟଗାଁ ବ୍ୟତୀତ ଆନନ୍ଦପୁର ସବ୍‌ଡିଭିଜନର ପଞ୍ଚୁପଲ୍ଲୀ, କନ୍ଦ୍ରୋ, କେନ୍ଦୁଝର-ଗଡ଼, ମଣ୍ଡୁଆ, ପଟିଲୋ, ଓରଆ, କଳୁଆଗଡ଼ ଓ କଇତରାଗଡ଼ରେ ମଧ୍ୟ ମାଆ ତାରିଣୀଙ୍କ ପୀଠସ୍ଥଳୀମାନ ରହିଛି । ନିକଟରେ ଶୁଆକାଟିଠାରେ ଅନ୍ୟ ଏକ ତାରିଣୀପୀଠ ପ୍ରତିଷ୍ଠିତ ହୋଇଛି ।

ତାରଣୀଙ୍କ ବ୍ୟତୀତ କେନ୍ଦୁଝର ଜିଲ୍ଲାରେ ଯେଉଁ ପ୍ରମୁଖ ଦେବୀପୀଠ ରହିଛି, ସେଗୁଡ଼ିକ ହେଲା—

ବଞ୍ଚୋ—ବରାହୀ,
କେନ୍ଦୁଝରଗଡ଼—ଚର୍ଚ୍ଚିକା
ଗୋନାସିକା—ଚତୁର୍ଭୁଜା ପାର୍ବତୀ
କରଞ୍ଜୁ ଘାଟି—ଗିରି ରାଜେଶ୍ୱରୀ
କେନ୍ଦୁଝର ଦୁର୍ଗା ବଜାର—ଶ୍ରୀଦୁର୍ଗା
ପାଟେଶ୍ୱର—ପାର୍ବତୀ
କେନ୍ଦୁଝର ଗଡ଼—ବାଶୁଳୀ
ପାଟଣା—ମୂଷାଖୋଇ
ଚମ୍ପକପୁର—କ୍ୟୋଉଁପୁର ଓ ବାଶୁଳୀ
ରାଜପ୍ରାସାଦର ମୁଖ୍ୟଦ୍ୱାର—ଦୁଆରଶୁଣି
ନୟାକୋଟ, ନୟାଗଡ଼—ଦୁଆରଶୁଣି
ଶୁଆକାଟୀ—ମହାପାଟ
କେନ୍ଦୁଝର—କରଣ ସାହି,ଗଡ଼ ସାହି, ଆଟୋପୁର—ରଙ୍ଗାପାଟ ।
ସୀତାବିଞ୍ଜି—ଲବକୁଶଙ୍କ ଏନ୍ଦୁଡଶାଳ
ଆନନ୍ଦପୁର—ବ୍ରାହ୍ମଣୀଦେବୀ (ହରନପୁର)
ଯୁଯୁପଦା—ବ୍ରାହ୍ମଣୀ ଦେବୀ
ବହଲା—ବଉଲାଶୁଣି
ତେଲକୋଇ—ହିଙ୍ଗୁଳା
ବଉଲା—ଗଡ଼ଚଣ୍ଡୀ
ଉଦୟପୁର—ଗଡ଼ଚଣ୍ଡୀ
ରାଜନଗର—ଅମ୍ବାରୀ
କେନ୍ଦୁଝରଗଡ଼—ଦଣ୍ଡଦେବୀ, କନକଦୁର୍ଗା ଓ ତାରଣୀ
ସାହାର ପଡ଼ାର ବଡ଼ବିଲ—ଦ୍ରୌପଦୀ
ଅଲଙ୍ଗା—ଚଣ୍ଡୀ

ବିଭିନ୍ନ ଶିବମନ୍ଦିର ଓ ଦେବପୀଠ ବ୍ୟତୀତ କେନ୍ଦୁଝର ଜିଲ୍ଲାରେ ବିଭିନ୍ନ ଗ୍ରାମର ଅସଂଖ୍ୟ ଗ୍ରାମଦେବତି ଓ ଅସଂଖ୍ୟ ଦେବଦେବୀ ପୂଜା ପାଆନ୍ତି ।

କେନ୍ଦୁଝରର ରାଷ୍ଟ୍ରଦେବତା ଶ୍ରୀ ବଳଦେବଜୀଉ, ସିଦ୍ଧ ବଳଦେବ, ସିଦ୍ଧ ଜଗନ୍ନାଥଙ୍କ ବ୍ୟତୀତ ରାଜପ୍ରାସାଦରେ ମଦନମୋହନ କେନ୍ଦୁଝର ରାଜବଂଶର

କୁଳଦେବତା ଭାବେ ପୂଜା ପାଇ ଆସୁଥିଲେ । ଜୟଗୋପାଳ ହେଉଛନ୍ତି, ମଦନ-ମୋହନଙ୍କର ବିଜୟ ପ୍ରତିମା । କେନ୍ଦୁଝର ଗଡ଼ରେ ଗଡ଼ ରଘୁନାଥ, ବ୍ରଜମୋହନ, ଲକ୍ଷ୍ମୀନାରାୟଣ, ରାମଲକ୍ଷ୍ମଣ ସୀତାଙ୍କ ପାର୍ଶ୍ୱ ସ୍ୱତନ୍ତ୍ର ମନ୍ଦିର ମଧ୍ୟ ରହିଛି । କେତେକ ଜାଗାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦଧିବାମନ ନାମରେ ପୂଜା କରାଯାଏ ।

**କେନ୍ଦୁଝର ଜିଲ୍ଲାରେ ଥିବା ଦେବଦେବୀମାନଙ୍କ ମଧ୍ୟରେ ଥିବା ବିଶେଷତ୍ୱ—**

- ସମଣା, ନୟାଗଡ଼ ଓ ବସନ୍ତପୁରଠାରେ କେବଳ ବଳଦେବ ଜୀଉଙ୍କର ଏକ ମୂର୍ତ୍ତି ପୂଜା ପାଆନ୍ତି ।
- ସିଦ୍ଧମଠ ଓ ପଣ୍ଡୁଆଠାରେ ଏକକ ଜଗନ୍ନାଥ ପୂଜା ପାଆନ୍ତି ।
- କେନ୍ଦୁଝରର ମୁଖ୍ୟ ମନ୍ଦିରରେ ସୁଭଦ୍ରା ଲୋହିତବର୍ଣ୍ଣା ।
- ସିଦ୍ଧ ଜଗନ୍ନାଥଙ୍କ ସମ୍ମୁଖରେ ଗରୁଡ଼ ନଥାଇ ହନୁମାନ ମୂର୍ତ୍ତି ଦେଖିବାକୁ ମିଳେ ।
- ସିଦ୍ଧମଠର ବନବିହାରୀଙ୍କ ଚଳନ୍ତି ପ୍ରତିମା ହେଉଛନ୍ତି—କାଷ୍ଠ ନିର୍ମିତ ମହାଦେବ ।
- ସୀତାବିଞ୍ଜିଠାରେ ଥିବା ବୌଦ୍ଧଯୁଗର ମୂର୍ତ୍ତି—ପଞ୍ଚମୁଖୀ ଶିବଙ୍କୁ କେତେକ ସୂର୍ପଣଖା ଭାବେ ପରିଚିତ କରାନ୍ତି ।
- ଇଛାଲର ବିରଞ୍ଚିନାରାୟଣ ମନ୍ଦିର ବେଢ଼ାରୁ ମାଟି ନେଇ ଯେ କୌଣସି ଚର୍ମରୋଗ ଉପରେ ଲେପଦେଲେ ତାହା ଆରୋଗ୍ୟ ହୁଏ ବୋଲି ଲୋକ-ବିଶ୍ୱାସ ଅଛି ।
- ସୀତାବିଞ୍ଜିଠାରେ ଥିବା ଲବକୁଶଙ୍କ ପଥରକୁ କାଖେଇଲେ ନିଃସନ୍ତାନମାନେ ସନ୍ତାନପ୍ରାପ୍ତ ହୁଅନ୍ତି ବୋଲି ଲୋକବିଶ୍ୱାସ ଅଛି ।
- ନନ୍ଦପୁର ଓ ଜ୍ୟୋତିପୁର ବାଟରେ କପିଳମୁନି ନାମକ ସ୍ଥାନରେ ଥିବା ଦେବୀଙ୍କୁ ପିଲେହିପେଟୀ ଠାକୁରାଣୀ କହନ୍ତି । ସେ ଦେବୀଙ୍କ ପାଦୁକ ପାଣି ପିଇଲେ ପ୍ଲୀହାରୋଗ ଆରୋଗ୍ୟ ହୁଏ ବୋଲି ଲୋକବିଶ୍ୱାସ ଅଛି । ଏଠାରେ ଦେଶଖିଆ ପର୍ବ ପାଳିତ ହୁଏ ।
- ସିଦ୍ଧ ମଠର ଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କ ବିଜୟପ୍ରତିମା ନାରାୟଣ ମୂର୍ତ୍ତି ନ ହୋଇ କୃଷ୍ଣଙ୍କ ମୂର୍ତ୍ତି ପୂଜା ପାଆନ୍ତି ।

- ଗୋନାସିକାରେ ପ୍ରଚଳିତ ରଥଯାତ୍ରା ୧୯୪୭ ମସିହାରୁ ବନ୍ଦ ହୋଇ-ଯାଇଛି ।

- ରାଜା ଗୋପୀନାଥ ଭଞ୍ଜଦେବ ରାଜପ୍ରସାଦ ମଧ୍ୟରେ ଅନୁଷ୍ଠିତ ହେଉଥିବା ରଥଯାତ୍ରାକୁ ବନ୍ଦ କରିଦେଇ ସିଦ୍ଧମଠରେ ରଥଯାତ୍ରା ପ୍ରବର୍ତ୍ତନ କରିଥିଲେ ।

- କେନ୍ଦୁଝର ଆଦିବାସୀମାନେ ଯେଉଁ ସାତ ମାଆ ଭଉଣୀଙ୍କୁ ପୂଜା କରନ୍ତି, ସେମାନେ ହେଲେ— କଚକେଶ୍ୱରୀ, ଘଟଗାଁ ତାରିଣୀ, ଧନୁଗୁରୁର ଧନୁଗୁରିଆଣି, ବାଇକାପଡ଼ାର ଗୃଷ୍ମଖାଇ, ବାରବଣି ପର୍ବତର ବାରବଣିଆଣି, ଓରିଆର ତାରିଣୀ ଓ କାଳିଆହତା ନିକଟସ୍ଥ ରେବୁଟି ଗ୍ରାମର ଚଣ୍ଡିକା । କଚକେଶ୍ୱରୀଙ୍କ ବ୍ୟତୀତ ଅନ୍ୟ ସବୁ ଦେବୀଙ୍କୁ ଦେହୁରୀ ଫଙ୍ଗାଧାରୀ ଶବରମାନେ ପୂଜା କରନ୍ତି ।

- ସିଦ୍ଧମଠର ମହାଦେବ ବନବହାରୀ—ପଥର ନିର୍ମିତ ଶିବପାର୍ବତୀ ମୂର୍ତ୍ତିରେ ପୂଜା ପାଆନ୍ତି ।



# କେନ୍ଦୁଝରର ଆଦିବାସୀ

ଆମ ଓଡ଼ିଶାରେ ମୋଟ ୬୨ଟି ସମ୍ପ୍ରଦାୟର ଅଧିବାସୀ ବସବାସ କରନ୍ତି । ଏମାନଙ୍କର ସଂଖ୍ୟା ଆମ ରାଜ୍ୟର ମୋଟ ଲୋକସଂଖ୍ୟାର ଶତକଡ଼ା ୨୩ ଭାଗ । ମଧ୍ୟପ୍ରଦେଶ ପରେ ଓଡ଼ିଶା ହେଉଛି ଦ୍ୱିତୀୟ ବୃହତ୍ତମ ଆଦିବାସୀବହୁଳ ରାଜ୍ୟ । ଏମାନଙ୍କୁ ମୋଟାମୋଟି ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଏ । ଯଥା—ଅଷ୍ଟ୍ରିକ୍ (ମୁଣ୍ଡା), ଦ୍ରାବିଡ଼ ଓ ଇଣ୍ଡୋଆର୍ଯ୍ୟ ବା ମିଶ୍ରିତ ଆର୍ଯ୍ୟଗୋଷ୍ଠୀ ।

ଏମାନଙ୍କ ମଧ୍ୟରୁ କେତୋଟି ଅତି ପ୍ରାଚୀନ, ଲୁପ୍ତପ୍ରାୟ, କ୍ଷମକ୍ଷୟିଷ୍ଣୁ ତଥା ଅତି ଅବହେଳିତ ସମ୍ପ୍ରଦାୟକୁ ସରକାର ଚିହ୍ନଟ କରିଛନ୍ତି । ସେମାନେ ହେଲେ ଜୁଆଙ୍ଗ, ବଣ୍ଡା, ଲାଞ୍ଜିଆସଉରା, କୁଟିଆକନ୍ଧ, ଡଙ୍ଗରିଆକନ୍ଧ, ମାଙ୍କଡ଼ିଆ ଓ ପାହାଡ଼ିଭୂୟାଁ ଇତ୍ୟାଦି ।

ଆମ ଜିଲ୍ଲା କେନ୍ଦୁଝର ଏକ ଆଦିବାସୀବହୁଳ ଅଞ୍ଚଳ । ଏହି ଜିଲ୍ଲାରେ ଭୂୟାଁ, ଜୁଆଙ୍ଗ, ସାନ୍ତାଳ, ଗଣ୍ଡ, ମୁଣ୍ଡା, ହୋ, ସାଉଁତି, ରାଜୁଆର, ବାଥୁଡ଼ି, ଖରିଆର, କୋହ୍ଲ, କୋରା ଓ କୋଲ ପ୍ରଭୃତି ସମ୍ପ୍ରଦାୟର ଲୋକେ ବସବାସ କରନ୍ତି । ଏମାନଙ୍କର ଚଳଣି ଏକପ୍ରକାର ଜଣାପଡୁଥିଲେ ମଧ୍ୟ ପ୍ରତ୍ୟେକ ସମ୍ପ୍ରଦାୟର ଚଳଣି, ପରମ୍ପରା ଓ ପ୍ରଥା ମଧ୍ୟରେ ସ୍ୱତନ୍ତ୍ରତା ସହଜରେ ବାରି ହୁଏ । ତେଣୁ କେନ୍ଦୁଝରରେ ବସବାସ କରୁଥିବା କେତୋଟି ପ୍ରମୁଖ ସମ୍ପ୍ରଦାୟର ରୀତିନୀତି ଓ ସଂସ୍କୃତି ସମ୍ପର୍କରେ ସ୍ୱତନ୍ତ୍ର ଭାବେ ଆଲୋଚନା କରାଯିବା ଉଚିତ ହେବ ।

କେନ୍ଦୁଝର ଏକ ଆଦିବାସୀବହୁଳ ଜିଲ୍ଲା ହୋଇଥିବାରୁ, ଆଦିବାସୀ ଭାଇ-ଭଉଣୀମାନଙ୍କୁ ବିଭିନ୍ନପ୍ରକାର ସୁଖସୁବିଧା ଯୋଗାଇଦେବା ଉଦ୍ଦେଶ୍ୟରେ ସରକାର ୧୯୭୩ ମସିହାରେ ଆଦିବାସୀ ଉନ୍ନୟନ ସଂସ୍ଥା ଗଠନ ଓ ୧୯୭୫ ମସିହାରେ ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନା କାର୍ଯ୍ୟକାରୀ କରିଥିଲେ । ପରବର୍ତ୍ତୀ କାଳରେ

ଅର୍ଥାତ୍ ୧୯୭୯ ମସିହାରେ ଏହି ଦୁଇଟି ସଂସ୍ଥାକୁ ମିଶାଇ ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ବା I T D A ଗଠନ କରାଗଲା । ଯେଉଁ ଅଞ୍ଚଳରେ ଲୋକସଂଖ୍ୟାର ଶତକଡ଼ା ପଚାଶ ଭାଗ ଆଦିବାସୀ ବସବାସ କରୁଛନ୍ତି, ସେ ଅଞ୍ଚଳକୁ I T D Aର ପରିସରଭୁକ୍ତ କରାଯାଇଛି । ତେଣୁ କେନ୍ଦୁଝର ସଦର ଓ ଚମ୍ପୁଆ ସବ୍‌ଡିଭିଜନରେ ଦୁଇଟି ଏହିଭଳି ସଂସ୍ଥା କାର୍ଯ୍ୟ କରୁଛି । ଏହି ସଂସ୍ଥା ମୁଖ୍ୟତଃ ଆଦିବାସୀ ସଂପ୍ରଦାୟର ବହୁମୁଖୀ ଉନ୍ନତି ପାଇଁ ରାସ୍ତାଘାଟ, ଜଳସେଚନ, ସ୍ୱାସ୍ଥ୍ୟଶିକ୍ଷା ଓ ଅର୍ଥନୈତିକ ବିକାଶ ଉଦ୍ଦେଶ୍ୟରେ ବିଭିନ୍ନ କାର୍ଯ୍ୟ କରିଥାଏ ।

ଅତି ପ୍ରାଚୀନ ତଥା ଅବହେଳିତ ଜୁଆଙ୍ଗ ସଂପ୍ରଦାୟର ସର୍ବାଙ୍ଗୀଣ ଉନ୍ନତି ପାଇଁ ସ୍ୱତନ୍ତ୍ର ଜୁଆଙ୍ଗ ଉନ୍ନୟନ ସଂସ୍ଥା ମଧ୍ୟ ଗଠନ କରାଯାଇଛି ।

ଓଡ଼ିଶା ହରିଜନ ଓ ଆଦିବାସୀ ଉନ୍ନୟନ ଅର୍ଥ ସମବାୟ ନିଗମର କେନ୍ଦୁଝର ଶାଖା ୧୯୮୪ ମସିହାରେ ପ୍ରତିଷ୍ଠିତ ହେବା ଫଳରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଆଦିବାସୀମାନଙ୍କୁ ବିଭିନ୍ନ ପ୍ରକାର ଋଣ, ବାସଗୃହ, ଦୋକାନ ଗୃହ ତଥା ତାଲିମ ପ୍ରଦାନ କରାଯାଉଛି । ପୁନଃ ଥଇଥାନ କାର୍ଯ୍ୟ ପାଇଁ ବ୍ୟାଙ୍କ ଋଣ ମଧ୍ୟ ଏହି ନିଗମ ପ୍ରଦାନ କରିଥାଏ ।

## କେନ୍ଦୁଝର ଜିଲାର ପ୍ରମୁଖ ଦୁଇଟି ଆଦିବାସୀ ସଂପ୍ରଦାୟ ସଂପର୍କରେ ସ୍ୱତନ୍ତ୍ର ସୂଚନା—

### (କ) ଜୁଆଙ୍ଗ

କିମ୍ବଦନ୍ତୀ କହେ—ଜୁଆଙ୍ଗମାନେ ହେଉଛନ୍ତି ସୃଷ୍ଟିର ପ୍ରଥମ ମଣିଷ ଜାତି । ବିଶ୍ୱାସ କରାଯାଏ—ସମସ୍ତ ପ୍ରାଚୀନ ଆଦିବାସୀ ସଂପ୍ରଦାୟ ମଧ୍ୟରେ ଜୁଆଙ୍ଗ ହେଉଛି ସର୍ବପ୍ରାଚୀନ । ଘନ ଅରଣ୍ୟପୂର୍ଣ୍ଣ ଗୋନାସିକା ପର୍ବତ ଶିଖରରେ ଏମାନେ କେଉଁ ଯୁଗରୁ ବସବାସ କରିଆସୁଛନ୍ତି, ତାର ଠିକ୍ ହିସାବ ନାହିଁ । ଏମାନଙ୍କର ଭାଷା ଅଷ୍ଟ୍ରିକ୍ ବର୍ଗର ଅନ୍ତର୍ଗତ । ତାଙ୍କର ସଂସ୍କୃତି ଦ୍ରାବିଡ଼ ସଂସ୍କୃତି ଦ୍ୱାରା ପ୍ରଭାବିତ । ଏହି ଜୁଆଙ୍ଗ ଶବ୍ଦର ଅର୍ଥ ଜୁଆଙ୍ଗ ଭାଷାରେ ହେଉଛି—'ଭଲ ମଣିଷ' । 'ଟାଙ୍ଗିଆ ଘସ, ବଣରେ ପଶ' ଥିଲା ଜୁଆଙ୍ଗମାନଙ୍କର ଜୀବନଧାରା । ଶିକାର ଏବଂ ଫଳମୂଳ ସଂଗ୍ରହ କରି ସେମାନେ ଜୀବିକା ଅର୍ଜନ କରୁଥିଲେ ।

ଜୁଆଙ୍ଗ ସମ୍ପ୍ରଦାୟର ବିଶେଷତ୍ୱ ହେଲା, ସେମାନେ କୌଣସିପ୍ରକାର ପରିସ୍ଥିତିରେ ବି ପରସ୍ୱ ଅପହରଣ କରନ୍ତି ନାହିଁ । ଭିକ୍ଷାବୃତ୍ତି ଜୁଆଙ୍ଗ ସଂପ୍ରଦାୟରେ ନାହିଁ । ଯଦିଓ ସେମାନେ ଅନ୍ୟମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ମଦ୍ୟପାନ କରନ୍ତି; କିନ୍ତୁ କୌଣସି

ଜୁଆଙ୍ଗ ମଦ୍ୟ ପ୍ରସ୍ତୁତ ଭଳି ସ୍ୱନକାର୍ଯ୍ୟ କରନ୍ତି ନାହିଁ । ଜାତିଭେଦ ଜୁଆଙ୍ଗ ସମାଜରେ ଚଳେନାହିଁ । ଆତ୍ମନିର୍ଭରଶୀଳ ଜୁଆଙ୍ଗମାନେ ନିଜକୁ ଋଷିପୁତ୍ର ଭାବେ ଦାବି କରନ୍ତି । ମଜାଙ୍ଗ ବା ମଣ୍ଡପଘର ହେଉଛି—ଜୁଆଙ୍ଗ ବସ୍ତିର ସର୍ବବୃହତ୍ତ୍ୱ ଦ୍ୱାରବନ୍ଧନ ଆଶ୍ରୟସ୍ଥଳୀ । ଏଇଠି ଗାଆଁର ଦୁଃଖସୁଖ, ଭଲମନ୍ଦ, ନ୍ୟାୟବିଚାର ଚାଲେ । ମନୋରଞ୍ଜନର କେନ୍ଦ୍ରସ୍ଥଳୀ ଏଇ ମଣ୍ଡପଘରେ ଦିନରାତି ଧୂନି ଜଳୁଥାଏ । ଏହାକୁ 'ଋଷିଧୂନି' ବୋଲି କୁହାଯାଏ । ଏଇଠି ଅବିବାହିତ ଯୁବକମାନେ ରାତିଯାପନ କରନ୍ତି । କୌଣସି ଅତିଥି ଆସିଲେ, ସେଇଠି ତାଙ୍କର ସତ୍କାର ହୁଏ । ଅତିଥିପରାୟଣ ଜୁଆଙ୍ଗମାନେ କାହାରିକୁ ଉପବାସ ରଖେଇ ଦିଅନ୍ତି ନାହିଁ । ସରଳ ତଥା ନିଷ୍କପଟ ଏବଂ ଅଭିଯୋଗ ଜାଣି-ନଥିବା ଜୁଆଙ୍ଗମାନେ ଅସଂଖ୍ୟ ଅନ୍ଧବିଶ୍ୱାସ ଏବଂ କୁସଂସ୍କାରର ଘେର ଭିତରେ ରହିଥିବାରୁ ଏକ କ୍ରମକ୍ଷୟିଷ୍ଣୁ ସମ୍ପ୍ରଦାୟରେ ପରିଣତ ହେବାରେ ଲାଗିଛନ୍ତି ।

ଚାଙ୍ଗୁବାଦ୍ୟ ଓ ଗୋଷ୍ଠୀନୃତ୍ୟରେ ମସଗୁଲ୍ ହୋଇ ଏମାନେ ଦିନଯାକର କ୍ଳାନ୍ତିକୁ ମେଣ୍ଟାଇଥାନ୍ତି । ବୈତରଣୀ ନଦୀକୁ ଏମାନେ ମୋକ୍ଷକାରିଣୀ ଦେବୀ ଏବଂ ବ୍ରହ୍ମେଶ୍ୱର ମହାଦେବଙ୍କୁ ଇଷ୍ଟଦେବ ଭାବେ ଗ୍ରହଣ କରିନେଇଛନ୍ତି ।

କୃଷ୍ଣ ଖର୍ବକାୟ ପ୍ରାଚୀନତମ ଏହି ଜୁଆଙ୍ଗମାନେ ଗୋନାସିକା ପର୍ବତ-ଶିଖରରେ ଥିବା ଗୁପ୍ତଗଙ୍ଗା, ବାଂଶପାଳ, ତେଲକୋଇ, ହରିଚନ୍ଦନପୁର ଅଞ୍ଚଳ ଏବଂ ପାଲଲହଡ଼ା ଅଞ୍ଚଳରେ ସମ୍ପ୍ରତି ବସବାସ କରୁଛନ୍ତି । ରେବଣା, ହୁଣ୍ଡା, ଘୁରଗଡ଼ ପ୍ରଭୃତି ଦଣ୍ଡପାଟରେ ମଧ୍ୟ ଏମାନେ ଦେଖାଯାଆନ୍ତି ।

୧୯୭୮ ମସିହାରେ ଜୁଆଙ୍ଗ ସମ୍ପ୍ରଦାୟର ଉନ୍ନତି ପାଇଁ ସରକାର ସ୍ୱତନ୍ତ୍ର ଉନ୍ନୟନ ସଂସ୍ଥା ଗଠନ କରିଛନ୍ତି । ଫଳରେ ୧୨୪ଟି ଜୁଆଙ୍ଗ ବସ୍ତି ମଧ୍ୟରୁ ୩୧ଟି ଜୁଆଙ୍ଗ ବସ୍ତିକୁ ଏହି ସଂସ୍ଥାର ପରିସରଭୁକ୍ତ କରାଯାଇଛି । ଏହି ସଂସ୍ଥା ମାଧ୍ୟମରେ ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ।

(ଖ) ଭୂୟାଁ

ନିଜକୁ ଭୂମିପୁତ୍ର ଭାବେ ଦାବି କରୁଥିବା ଭୂୟାଁ ସମ୍ପ୍ରଦାୟ ଭାରତର ପ୍ରାଚୀନତମ ଆଦିବାସୀ ସମ୍ପ୍ରଦାୟଗୁଡ଼ିକ ମଧ୍ୟରୁ ଅନ୍ୟତମ । ଏମାନେ ଓଡ଼ିଶାରେ ମୟୂରଭଞ୍ଜ, ଢେଙ୍କାନାଳ, ସୁନ୍ଦରଗଡ଼ ଏବଂ କେନ୍ଦୁଝର ଜିଲ୍ଲାରେ ମୁଖ୍ୟତଃ ବସବାସ କରନ୍ତି । ଭୂୟାଁ ସଂପ୍ରଦାୟ ଦୁଇଭାଗରେ ବିଭକ୍ତ ଯଥା : (୧) ପାହାଡ଼ି ଭୂୟାଁ ବା ପାହାଡ଼ ଭୂୟାଁ (୨) ସମକୁଳି ଭୂୟାଁ ବା ରାଜକୁଳି ଭୂୟାଁ । ଯେଉଁମାନେ ବଣ-ପାହାଡ଼ ଅଞ୍ଚଳରେ ରହି ଫଳମୂଳ ଶିକାର କରି ଜୀବନ ବିତାଉଥିଲେ, ସେମାନଙ୍କୁ ମୁଖ୍ୟତଃ

ପାହାଡ଼ି ବା ପାହଡ଼ି ଭୂୟାଁ କୁହାଯାଏ । ଯେଉଁମାନେ ରାଜସେବାରେ ଲାଗିଥିଲେ, ସେମାନେ ରାଜକୁଳି ବା ସନକୁଳି ଭୂୟାଁ ଭାବେ ପରିଚିତ ହେଉଥିଲେ ।

ଭୂୟାଁମାନେ ମଧ୍ୟ ଅତିଥିପରାୟଣ, ସରଳ ଓ ସ୍ୱାଭିମାନ ଜୀବନଯାପନ କରନ୍ତି । ବଣର ଫଳମୂଳ ସଂଗ୍ରହ ଓ ଶିକାର ତଥା ପୋଡ଼ୁଚାଷ ଥିଲା—ସେମାନଙ୍କର ପ୍ରଧାନ ଜୀବିକା । ବିଭିନ୍ନପ୍ରକାର ଅନ୍ଧବିଶ୍ୱାସ ଓ କୁସଂସ୍କାର ଭୂୟାଁ ସମାଜରେ ପ୍ରଚଳିତ ଥିବାରୁ ଏମାନଙ୍କର ବିକାଶ ତ୍ୱରାନ୍ୱିତ ହୋଇପାରିନାହିଁ । ପ୍ରକୃତିର ପୂଜକ ଭୂୟାଁମାନେ ମାଟି, ନଦୀ ଓ ହିଂସ୍ରଜନ୍ତୁମାନଙ୍କୁ ଦେବତାଭାବରେ ପୂଜା କରନ୍ତି । ଦେହୁରୀ ହେଉଛି—ସେମାନଙ୍କର ପରାମର୍ଶଦାତା ।

କେନ୍ଦୁଝର ଗୁଆକାଟୀଠାରୁ ତେଲକୋଇ ପର୍ଯ୍ୟନ୍ତ ଅରଣ୍ୟପୂର୍ଣ୍ଣ ପାର୍ବତ୍ୟ-ଅଞ୍ଚଳରେ ଏହି ଭୂୟାଁମାନେ ବହୁଳ ପରିମାଣରେ ବସବାସ କରନ୍ତି । ଏମାନେ ହେଉଛନ୍ତି—କେନ୍ଦୁଝର ଜିଲ୍ଲାର ଦ୍ୱିତୀୟ ବୃହତ୍ତମ ଗୋଷ୍ଠୀ । ଏମାନେ ସର୍ବଦା ସଙ୍ଗଠିତ ଭାବେ ଜୀବନଯାପନ କରନ୍ତି ।

ଜୁଆଙ୍ଗମାନଙ୍କର ମଜାଙ୍ଗ ବା ମଣ୍ଡପର ପରି ଭୂୟାଁମାନଙ୍କର ପ୍ରତ୍ୟେକ ଗ୍ରାମର କେନ୍ଦ୍ରସ୍ଥଳୀରେ 'ଦରବାର ଘର' ଥାଏ । ସେହି ଦରବାର ଘରେ ଗାଆଁର ପଞ୍ଚାୟତ ବସି ନ୍ୟାୟବିଚାର ହୁଏ । ଲୋକଙ୍କର ସୁଖ-ଦୁଃଖ, ଭଲ-ମନ୍ଦ ଆଲୋଚନା ହୁଏ । ଏମାନେ ମଧ୍ୟ ଗାଆଁର ଦେହୁରୀକୁ ଖୁବ୍ ମର୍ଯ୍ୟାଦା ଦିଅନ୍ତି । ତାଙ୍କ ପରାମର୍ଶକୁ ମାନି ଚଳନ୍ତି ।

ଭୂୟାଁମାନେ ଦେବତା ଗାଧା ବା ଦେବତା ଗାଧୁଆ ନାମକ ଗୋଟିଏ ପର୍ବ ପାଳନ କରନ୍ତି । ସେଥିରେ ଗୋଟିଏ ଖଣ୍ଡାକୁ ଦେବତା ଭାବରେ ମାନ୍ୟଦେଇ ଗାଧୋଇ ଦେଇ ସିନ୍ଦୂର ଲଗାଇ ପୂଜା କରନ୍ତି । ଏହାର ଅନ୍ତରାଳରେ ଭୂୟାଁ ସଂପ୍ରଦାୟର ସାମରିକ ପରଂପରାର ସଙ୍କେତ ନିହିତ ଥାଏ । କରମା ପୁନେଇଁକୁ ଏମାନେ ଅନ୍ୟଏକ ପର୍ବ ଭାବେ କାର୍ତ୍ତିକମାସରେ ପାଳନ କରନ୍ତି । ମାଘମାସ ଶେଷରେ 'ମାଘପୋଡ଼ା' ହୁଏ । ଏହା ଅଗ୍ନି ଉତ୍ସବ ସଙ୍ଗେ ସମାନ ।

ଭୂୟାଁ ସଂପ୍ରଦାୟରେ ବିଭିନ୍ନପ୍ରକାର ବିବାହ ପ୍ରଥା ପ୍ରଚଳିତ । କନ୍ୟାକୁ ଅପହରଣ କରିନେଇ ବିବାହ କରିବାକୁ 'ଘିଞ୍ଚା' ବିବାହ କୁହାଯାଏ । ପରସ୍ପର ପ୍ରତି ଆକୃଷ୍ଟ ହୋଇ ଯୁବକ-ଯୁବତୀ ମଧ୍ୟ ବିବାହ କରିଥାନ୍ତି । ପୂର୍ବେ ଘୁଙ୍ଗୁ ବଜେଇ ଏମାନେ ଦଳବଦ୍ଧ ହୋଇ ନୃତ୍ୟ କରୁଥିଲେ । ସେଇଠି ପୁଅ-ଝିଅଙ୍କ ମଧ୍ୟରେ ସମ୍ପର୍କ ସୃଷ୍ଟି ହେଲେ, ବିବାହ କାର୍ଯ୍ୟ ହେଉଥିଲା । କିନ୍ତୁ ଏଥିରେ କେତେକ ବିଭ୍ରାଟ

ଘଟିବାରୁ ୧୯୮୦ ମସିହା ବେଳକୁ 'ଦରବାର ଘରେ' କିଛିଛି କଆଯାଇ ଙ୍ଗୁବାଦ୍ୟ ଓ ଗୋଷ୍ଠୀନୃତ୍ୟକୁ ଭୂୟାଁ ସଂପ୍ରଦାୟରେ ସେମାନଙ୍କୁ କଷିଙ୍କ କରାଯାଇଛି ।

କେନ୍ଦୁଝରର ଭୂୟାଁମାନେ କେନ୍ଦୁଝର ରାଜାଙ୍କୁ ଅଭିଷେକ କରାଇଥାନ୍ତି । ପାରଂପରିକ ରୀତି ଅନୁସାରେ ଜଣେ ଭୂୟାଁଯୁବକ ଘୋଡ଼ା ହୋଇ ରାଜାଙ୍କୁ ବୋହି-ନିଏ, ଅନ୍ୟ ଜଣେ ଯୁବକ ସିଂହାସନକୁ ଚଢ଼ିବାର ପାହାଚ ପରି ଠିଆହୁଏ, ତା' ଉପରେ ରାଜା ପାଦଦେଇ ସିଂହାସନ ଉପରେ ଅଭିଷେକ ହୁଅନ୍ତି । ଶେଷରେ ରାଜା ଜଣେ ଭୂୟାଁ ଯୁବକର ଶିରଚ୍ଛେଦନ ଅଭିନୟ କରି ଖଣ୍ଡା ଛୁଆଁଇଥାନ୍ତି । ଏହାର ଅର୍ଥ ହେଲା—ଭୂୟାଁମାନେ ରାଜାଙ୍କୁ ଶାସନ କରିବାର ଏବଂ ପ୍ରାଣଦଣ୍ଡ ଦେବାର କ୍ଷମତା ପ୍ରଦାନ କରିଥାନ୍ତି ।

କେନ୍ଦୁଝରର ରଥଯାତ୍ରାରେ ଭୂୟାଁମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ରଥଯାତ୍ରା ପାଇଁ ଆବଶ୍ୟକ ହେଉଥିବା ଶିଆଳିଲତାରେ ପ୍ରସ୍ତୁତ ବୃହଦାକାର ରଥ-ଦଉଡ଼ିକୁ ଭୂୟାଁମାନେ ଯୋଗାଇଥାନ୍ତି । ଦଳ ଦଳ ହୋଇ ନୃତ୍ୟ-ଗୀତରେ ସେମାନେ ବଣଜଙ୍ଗଲକୁ ପ୍ରକମ୍ପିତ କରି ରଥଯାତ୍ରାରେ ଉପସ୍ଥିତ ହୁଅନ୍ତି । ରଥଯାତ୍ରା ଉପଲକ୍ଷେ 'ରଥଭେଟି' ଦେଇ ପ୍ରଭୁ ଦର୍ଶନ ପରେ ଗୀତ ଗାଇ ଗାଇ ଘରକୁ ଫେରନ୍ତି । ଅନ୍ୟ ଆଦିବାସୀ ସମ୍ପ୍ରଦାୟ ଭଳି ଏମାନେ ମଧ୍ୟ ବଳିଷ୍ଠ, କର୍ମଠ ଓ ସାହସୀ ସମ୍ପ୍ରଦାୟ ହୋଇଥିବାରୁ ବହୁ ଘାତ-ପ୍ରତିଘାତକୁ ସହ୍ୟ କରି ନିଜକୁ ପ୍ରତିଷ୍ଠା କରିପାରିଛନ୍ତି ।



# କେନ୍ଦୁଝରର ରତନାମେଳି ଓ ଧରଣୀ ବିଦ୍ରୋହ

ଭାରତର ସ୍ୱାଧୀନତା ଆନ୍ଦୋଳନ ସହିତ ପ୍ରତ୍ୟକ୍ଷ ଭାବେ ଜଡ଼ିତ ନ ହେଲେ ମଧ୍ୟ କେନ୍ଦୁଝରର ଦୁଇଟି ପ୍ରମୁଖ ବିଦ୍ରୋହ ପରୋକ୍ଷ ଭାବରେ ଇଂରେଜ ସରକାରଙ୍କ ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା । ତେଣୁ କେନ୍ଦୁଝରର ରତନାମେଳି ଓ ଧରଣୀ ବିଦ୍ରୋହ ସମ୍ପର୍କରେ ସ୍ୱତନ୍ତ୍ର ପ୍ରବନ୍ଧର ଆବଶ୍ୟକତା ଅନୁଭୂତ ହୁଏ ।

କେନ୍ଦୁଝରର ଭୂୟାଁ ସମ୍ପ୍ରଦାୟର ଆଦିବାସୀମାନେ କ୍ୟୋଝଭଞ୍ଜଙ୍କୁ ରାଜା କରାଇଥିଲେ । ସେହି କାଳରୁ ସେମାନେ ରାଜବାଟୀ ଓ ବଡ଼ ଦେଉଳ ନିର୍ମାଣ ଭଳି ବିଭିନ୍ନ କାର୍ଯ୍ୟ ବିନା ପାରିଶ୍ରମିକରେ ବେଠି ମାଧ୍ୟମରେ ରାଜକାର୍ଯ୍ୟ କରିଆସୁଥିଲେ । ଇଂରେଜ ସରକାର ରାଜାଙ୍କୁ ସୁରକ୍ଷା ଯୋଗାଇ ଦେଉଥିବାରୁ ପ୍ରଜାମାନଙ୍କ ଉପରେ ରାଜାମାନଙ୍କର ଅତ୍ୟାଚାର ବଢ଼ି ଚାଲିଥାଏ ।

ଅଷ୍ଟାଦଶ ଶତାବ୍ଦୀର ଶେଷଭାଗକୁ ଲୋକଙ୍କର ଅବସ୍ଥା ଅଧିକ ଖରାପ ଅଡ଼କୁ ଗତି କଲା । ରାଜା ବଳଭଦ୍ର ଭଞ୍ଜଙ୍କ ରାଜତ୍ୱକାଳରେ ମରହଟ୍ଟାମାନଙ୍କର ପ୍ରାଧାନ୍ୟ ଲୋପ ପାଇଲା । ବାମଣ୍ଡା ଓ ଢେଙ୍କାନାଳ ସହିତ ଯୁଦ୍ଧ କରିବା ପାଇଁ କେନ୍ଦୁଝର ରାଜାଙ୍କୁ ସାମରିକ ଶକ୍ତି ବଢ଼ାଇବାକୁ ପଡିଲା । ଏଥିପାଇଁ ଭୂୟାଁମାନଙ୍କୁ ଅଧିକ ତ୍ୟାଗ କରିବାକୁ ପଡ଼ୁଥିଲା । ସେମାନଙ୍କ ଅଭାବ-ଅସୁବିଧା ବୁଝିବା ଦୂରେ ଥାଉ, ତାଙ୍କ ଉପରେ ଶାସକଙ୍କର ଅତ୍ୟାଚାର ବଢ଼ିଚାଲିଲା ।

୧୮୦୪ ମସିହାରେ ରାଜା ଜନାର୍ଦ୍ଦନ ଭଞ୍ଜଙ୍କ ଶାସନକାଳରେ କେନ୍ଦୁଝର ରାଜ୍ୟ ଇଷ୍ଟ ଇଣ୍ଡିଆ କମ୍ପାନୀର ନିୟନ୍ତ୍ରଣାଧୀନ ହେଲା । ଫଳରେ ହଳ ଟିକସ, ଘର ଟିକସ ସହିତ ବେଠି, ଭେଟି, ରସଦ ଭଳି ସରକାରୀ ଜୁଲମ ପ୍ରଜାମାନଙ୍କ ଉପରେ ବଢ଼ିଚାଲିଲା । ଏଥିପାଇଁ ୧୮୧୯ ମସିହାରେ ଥରେ ଏବଂ ୧୮୨୫ ମସିହାରେ ଦ୍ୱିତୀୟ ଥର ଜୁଲମ ବିରୋଧରେ ପ୍ରତିବାଦ ଶୁଣାଯାଇଥିଲା ।

ରାଜା ଗଦାଧର ଭଞ୍ଜଙ୍କ ସମୟରେ ରାଜକର୍ମଚାରୀ ଓ ଅମଲାଙ୍କ ଅତ୍ୟାଚାର ବଢ଼ିଚାଲିଲା । ୧୮୪୮ ମସିହାରେ ରତ୍ନା ନାଏକଙ୍କ ନେତୃତ୍ୱରେ ଜନଜାଗରଣ ସୃଷ୍ଟି ହେଲା । ଏଥିପାଇଁ ରତ୍ନା ନାଏକଙ୍କୁ ଛଅବର୍ଷ ପାଇଁ ଜେଲଦଣ୍ଡ ମିଳିଥିଲା ।

ଗଦାଧର ଭଞ୍ଜଙ୍କ ମୃତ୍ୟୁ ପରେ ଉତ୍ତରାଧିକାରୀତ୍ୱକୁ ନେଇ 'ରତ୍ନା ବିଦ୍ରୋହ' ସୃଷ୍ଟି ହେଲା । ଏହି ବିଦ୍ରୋହର ଭୟାବହତା ଏତେ ପ୍ରବଳ ହେଲା ଯେ, କେବଳ କେନ୍ଦୁଝରର ରାଜଛତ୍ର ନୁହେଁ, ଶକ୍ତିଶାଳୀ ଇଂରେଜ ସରକାର ମଧ୍ୟ ବ୍ୟତିବ୍ୟସ୍ତ ହୋଇପଡ଼ିଲା । ରତ୍ନା ନାଏକ ଓ ନନ୍ଦ ନାଏକ ସମସ୍ତ ଭୂୟାଁ ଆଦିବାସୀଙ୍କୁ ଏକଜୁଟ କରିପାରିଥିଲେ । ତାଙ୍କୁ ଜୁଆଙ୍ଗ, ମୁଣ୍ଡା ଓ ହୋ ସଂପ୍ରଦାୟ ଅଧିବାସୀମାନେ ମଧ୍ୟ ସମର୍ଥନ ଓ ସହଯୋଗ କରିଥିଲେ ।

ମହାରାଣୀ ବିଷ୍ଣୁପ୍ରିୟାଙ୍କର ଷଡ଼ଯନ୍ତ୍ର ଫଳରେ ଭୂୟାଁମାନଙ୍କର ଅସନ୍ତୋଷକୁ ଆଧାର କରି ଏହି ମେଳି ପ୍ରବଳ ଆକାର ଧାରଣ କରିଥିଲା । ମୋଟାମୋଟି ଭାବେ କହିବାକୁ ଗଲେ, ପ୍ରକାରାନ୍ତରେ ଏହା ଥିଲା କେନ୍ଦୁଝରବାସୀଙ୍କ ସହିତ ଇଂରେଜ ସରକାରଙ୍କର ସିଧାସଳଖ ସମର । ଏହି ବିଦ୍ରୋହକୁ ଦମନ କରିବା ପାଇଁ ସିଂହଭୂମିର ଡେପୁଟି କମିଶନର ଡକ୍ଟର ହେସ୍ ସାହେବ ସୈନ୍ୟବଳ ଧରି ମେ ୭ ତାରିଖ, ୧୮୬୮ ମସିହାରେ କେନ୍ଦୁଝର ଯାତ୍ରା କଲେ । ରାଜା ଧନୁର୍ଜୟ ନାରାୟଣ ଭଞ୍ଜ ସେତେବେଳକୁ ବିଦ୍ରୋହୀମାନଙ୍କ ଦ୍ୱାରା ଚତୁର୍ଦ୍ଦିଗରୁ ବେଷ୍ଟିତ ହୋଇଥାନ୍ତି । ହେସ୍ ସାହେବ ତାଙ୍କୁ ମୁକୁଳାଇଦେଲେ । ତଥାପି ବିଦ୍ରୋହ ଦମନ ହୋଇପାରିଲା ନାହିଁ । ବିଭିନ୍ନ ଦିଗରୁ ସୈନ୍ୟଦଳ ଆସି ବିଦ୍ରୋହୀମାନଙ୍କର ସମ୍ମୁଖୀନ ହେଲେ । ଜୁନ୍‌ମାସ ବେଳକୁ ବିଦ୍ରୋହୀମାନେ ଦେଓ୍ୱାନଙ୍କୁ ହତ୍ୟା କଲେ ବୋଲି ଅନୁମାନ କରାଯାଏ । କଟକରୁ ରେଭେନ୍‌ସା ସାହେବ ସୈନ୍ୟବଳ ସହ ଆସି କେନ୍ଦୁଝରରେ ପହଞ୍ଚିବାରୁ ବିଦ୍ରୋହୀ ନେତାମାନେ ଆତ୍ମସମର୍ପଣ କଲେ । ଶେଷରେ ଅଗଷ୍ଟ ୧୫ ତାରିଖ ଦିନ ରତନା ଓ ନନ୍ଦ ନାଏକ ପାଲ୍‌ଲହଡ଼ା ରାଜାଙ୍କ ଦ୍ୱାରା ଧରାପଡ଼ିଲେ । ରତନା ଓ ଅନ୍ୟ ଛଅଜଣଙ୍କୁ ଫାଶିଦଣ୍ଡ ମିଳିଲା । ଅନ୍ୟ ଶହେଜଣଙ୍କୁ କାରାଦଣ୍ଡ ଦିଆଗଲା ।

ବିଦ୍ରୋହ ଦମନ ଫଳରେ ସାମୟିକ ଶାନ୍ତି ଫେରିଆସିଥିଲେ ମଧ୍ୟ ତାହା କ୍ଷଣସ୍ଥାୟୀ ଥିଲା । ଯାହା ପରବର୍ତ୍ତୀ କାଳରେ ଧରଣୀ ବିଦ୍ରୋହ ଭାବରେ ନୂତନ ରୂପ ନେଇ କେନ୍ଦୁଝର ମାଟିକୁ ଥରହର କରିଥିଲା ।

**ଧରଣୀ ବିଦ୍ରୋହ—**

ରତନାମେଳିର ପାଉଁଶଗଦାରେ ଯେଉଁ ନିଆଁ ଲୁଚିରହିଥିଲା, ତାହା ହୁରୁହୁରୁ ହୋଇ ଜଳିଉଠିଲା ଧରଣୀ ବିଦ୍ରୋହର ରୂପ ନେଇ ।

କେନ୍ଦୁଝର ରାଜ୍ୟରେ ଚାଲିଥିବା ବେଠିପ୍ରଥା ଏବଂ ପ୍ରଜା ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ, ଧରଣୀ ନାଏକ ନାମକ ଭୂୟାଁ ଯୁବକ । ୧୮୯୧ ମସିହାରେ କେନ୍ଦୁଝର ଗଡ଼ ପଶ୍ଚିମ ଦିଗରେ ପାହାଡ଼ ଉପରେ ଥିବା ମାଛକାନ୍ଦଣା ନାଳକୁ ବନ୍ଧ ବନ୍ଧାଇବା କାର୍ଯ୍ୟ ରାଜା ହାତକୁ ନେଇଥିଲେ । ଏହାଦ୍ୱାରା ଜଳସେଚନ ଓ ପାନୀୟଜଳ ଯୋଗାଣର ବ୍ୟବସ୍ଥା କରାଯିବା ଥିଲା ବନ୍ଧର ମୂଳ ଉଦ୍ଦେଶ୍ୟ । ଏଥିପାଇଁ ଦଶହଜାର ଟଙ୍କା ବ୍ୟୟବରାଦ କରାଯାଇଥିଲା । ଏହାର ଦାୟିତ୍ୱ ନେଇଥିଲେ—ବିଚିତ୍ରାନନ୍ଦ ଦାସ ନାମକ ଜଣେ ଅସିଷ୍ଟାଣ୍ଟ ମ୍ୟାନେଜର । ସେ ଥିଲେ ଧୂର୍ତ୍ତ ପ୍ରକୃତିର କର୍ମଚାରୀ । ସେ ନିଜର ସ୍ୱାର୍ଥସାଧନ ପାଇଁ ଭୂୟାଁମାନଙ୍କୁ ମାଗଣାରେ ବନ୍ଧ ନିର୍ମାଣ କାର୍ଯ୍ୟରେ ଲଗାଇଲେ । ରାଜାଙ୍କ ଦ୍ୱାରା ଏକ ସ୍ୱତନ୍ତ୍ର ଘୋଷଣାନାମା ଜାରି କରିଦେଲେ । ଫଳରେ ଅସହାୟ ଅବସ୍ଥାରେ ଗରିବ ଆଦିବାସୀ ମାଗଣାରେ ବେଠି ଖଟିବାକୁ ବାଧ୍ୟ ହେଲେ । ଧୀରେ ଧୀରେ ଭୂୟାଁ ସମାଜରେ ଅସନ୍ତୋଷର ନିଆଁ ଜଳିଉଠିଲା । ଶେଷରେ ଠିକ୍ ହେଲା—ବିଚିତ୍ରାନନ୍ଦ ଦାସଙ୍କୁ ହତ୍ୟା କରାଯିବ । ଏ' ଖବର ପାଇ ରାଜକର୍ମଚାରୀମାନେ ଭୂୟାଁପୀଢ଼କୁ ଯାଇ ୭୦ ଜଣ ନେତୃସ୍ଥାନୀୟ ଭୂୟାଁଙ୍କୁ ବନ୍ଦୀ କରିଆଣିଲେ । ଧରଣୀଧର ନାଏକ ଜଣେ ଶିକ୍ଷିତ ଯୁବକ ହୋଇଥିବାରୁ ତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ରାଜା ସିଂହଭୂମି ଅଞ୍ଚଳରେ ଉପୁଜିଥିବା ବିବାଦୀୟ ସର୍ଭେ କାର୍ଯ୍ୟରେ ନିଯୁକ୍ତ ଦେଲେ । କିନ୍ତୁ ଧରଣୀ ରାଜାଙ୍କର କୌଶଳ ବୁଝିପାରି ସେ ନିଯୁକ୍ତିକୁ ଗ୍ରହଣ କଲେନାହିଁ, ବରଂ ରାଜାଙ୍କ ବିରୋଧରେ ବିପ୍ଳବ ଘୋଷଣା କଲେ । ହଜାର ହଜାର ଆଦିବାସୀ ତାଙ୍କୁ ସମର୍ଥନ କଲେ ।

ଧରଣୀ ନିଜକୁ ମହାରାଣୀଙ୍କର ଧର୍ମପୁତ୍ର ଭାବେ ଘୋଷଣା କରିବାରୁ ଭବିଷ୍ୟତରେ ସେ ରାଜ୍ୟର ଶାସନଭାର ଗ୍ରହଣ କରିବେ ବୋଲି ସମସ୍ତଙ୍କର ଦୃଢ଼ ଧାରଣା ସୃଷ୍ଟି ହେଲା । ବିଦ୍ରୋହୀମାନେ ସଙ୍ଘବଦ୍ଧ ହୋଇ ବଣ, ପାହାଡ଼ ଭିତରେ ଲୁଚିରହି କର୍ମଚାରୀମାନଙ୍କୁ ହତ୍ୟା କଲେ । ସାରାରାଜ୍ୟରେ ଆତଙ୍କ ସୃଷ୍ଟି ହେଲା । ରାଜା ଭୟରେ କେନ୍ଦୁଝର ଗଡ଼ ଛାଡ଼ି ଆନନ୍ଦପୁରରେ ଲୁଚିଲେ ।

କେନ୍ଦୁଝର ଗଡ଼ର ଅନତିଦୂର ରାଇସୁଆଁ ଠାରେ ଧରଣୀ ନିଜକୁ ରାଜା ବୋଲି ଘୋଷଣା କରି ଦରବାର ବସାଇଲେ । ଫକୀରମୋହନଙ୍କୁ ଧରିଆଣି ବିଦ୍ରୋହୀମାନେ ଧରଣୀଙ୍କର ମନ୍ତ୍ରୀ କରି ରଖିବାକୁ ସ୍ଥିର କଲେ । ଏହି ବିଦ୍ରୋହରେ ବହୁ ଜମିଦାର ଓ ଅସନ୍ତୁଷ୍ଟ କର୍ମଚାରୀ ମଧ୍ୟ ମିଶିଗଲେ । ଫଳରେ ବିଦ୍ରୋହ ଭୟଙ୍କର ରୂପ ଧାରଣ କଲା ।

ଚତୁର ଇଂରେଜ କମିଶନରଙ୍କ ପ୍ରଚେଷ୍ଟାରେ ଏହି ବିଦ୍ରୋହକୁ ଦୃଢ଼ଭାବରେ ଦମନ କରାଗଲା । ଶହ ଶହ ବିଦ୍ରୋହୀ ଧରାପଡ଼ିଲେ, ଶେଷରେ ଧରଣୀଧର ହାର

ମାନିଲେ ସତ; କିନ୍ତୁ ଏହି ବିଦ୍ରୋହ ବିଦେଶୀ ଶାସକ ତଥା ରାଜାଙ୍କର ଅନ୍ୟାୟ ଅତ୍ୟାଚାର ବିରୋଧରେ ଲଢ଼ିବା ପାଇଁ ଏକ ନୂତନ ମହାଦ୍ରୁମର ବୀଜରୋପଣ କରିଥିଲା । ଏ ସମ୍ପର୍କରେ ସ୍ୱତନ୍ତ୍ର ଆଲୋଚନା 'ସ୍ୱାଧୀନତା ସଂଗ୍ରାମକୁ କେନ୍ଦୁଝରର ଅବଦାନ' ପୁସ୍ତକରେ ଦ୍ରଷ୍ଟବ୍ୟ ।



# କେନ୍ଦୁଝରର କୃଷି

କେନ୍ଦୁଝର ଜିଲାରେ କୃଷି ଉପଯୋଗୀ ଜମିର ପରିମାଣ ୨ ଲକ୍ଷ ୯୭ ହଜାର, ୮୬୩ ହେକ୍ଟର । ଏଥିରୁ ଷାଠିଏ ଭାଗ ଜମିରେ ଧାନଚାଷ ହୁଏ । ମୁଖ୍ୟତଃ କେନ୍ଦୁଝର ଚାଷୀ ବର୍ଷାଜଳ ଉପରେ ନିର୍ଭର କରି ଚାଷ କରନ୍ତି । ଏହି ଜିଲାରେ ହିଡ଼ ନଥିବା ଉଚ୍ଚଜମିରେ ଖରିଫ୍ ଋତୁରେ ମକା, ଡାଲିଜାତୀୟ ଫସଲ, ତୈଳବୀଜଜାତୀୟ ଫସଲ ଏବଂ ପନିପରିବାଜାତୀୟ ଫସଲ ଚାଷ ମଧ୍ୟ କରାଯାଏ । ବିନା ଜଳସେଚନରେ ରବି-ଋତୁରେ ବାଦାମ ଚାଷ, ମଟର, ସୋରିଷ ଚାଷ ହେଉଛି ଏ' ଜିଲାର ବିଶେଷତ୍ୱ । ଅନ୍ୟ ଅଞ୍ଚଳ ପରି ମୁଗ, ବିରିଚାଷ—ଧାନ ଚାଷ ପରେ ବତର ମାଟିରେ ହୁଏ ।

ଆନନ୍ଦପୁର ଅଞ୍ଚଳରେ ନଳିତା, ଆଳୁ, କଳାମୁଗ ଓ ବିଭିନ୍ନପ୍ରକାର ପରିବା ଚାଷ କରି ଜନତା ତଥା ସେ ଅଞ୍ଚଳର ଅର୍ଥନୈତିକ ଉନ୍ନତି ସାଧନ କରନ୍ତି ।

**ଉଦ୍ୟାନ ବିଭାଗ—**

ଏହି ଜିଲାର ଜଳବାୟୁ ବିଭିନ୍ନପ୍ରକାର ଫଳ ଓ ସମସ୍ତପ୍ରକାର ପନିପରିବା ଚାଷ ପାଇଁ ଅନୁକୂଳ । ତେଣୁ ଏଠାରେ ଫଳଚାଷ, ଫୁଲଚାଷ, ଛତୁଚାଷ ଓ ବିଭିନ୍ନପ୍ରକାର ପନିପରିବା ଚାଷକୁ ଉଦ୍ୟାନ ବିଭାଗ ସ୍ୱତନ୍ତ୍ର ଭାବେ ଯତ୍ନ ନେଇଥାନ୍ତି । ଫଳଗଛ ଚାରା ଓ ପନିପରିବା ମଞ୍ଜି ଉତ୍ପାଦନ ପାଇଁ ଭୁଇଁୟାଁର, ତିରିମାକାନ୍ତି ଓ ଚମ୍ପୁଆଠାରେ ତିନୋଟି କେନ୍ଦ୍ର ସ୍ଥାପିତ ହୋଇଛି । ସେହିପରି କେନ୍ଦୁଝର, ପାଟଣା, ସାହାରପଡ଼ା, ଘଟଗାଁ, ତେଲକୋଇ, ଆନନ୍ଦପୁର ଓ ଚମ୍ପୁଆଠାରେ ଚାରା ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଯାଇ ସୁଲଭ ମୂଲ୍ୟରେ ଚାରା ଓ ବିହନ ଯୋଗାଇ ଦିଆଯାଉଛି ।

### ରେଶମ ଶିଳ୍ପ—

କେନ୍ଦୁଝର ଜିଲ୍ଲା ଟସର, ଏଣ୍ଡି ଏବଂ ମଲବରୀ ଚାଷ ପାଇଁ ଉପଯୁକ୍ତ । ମଲବରୀ, ତୁତଗଛ ଲଗାଇ ରେଶମ କୀଟ ପାଳନ ଉଦ୍ଦେଶ୍ୟରେ ୧୬ଟି ଟସରଚାଷୀ ସମବାୟ ସମିତି ଗଠନ କରାଯାଇଛି । ଅର୍ଜୁନ ଗଛ ଓ ଅସନ ଗଛ ଲଗାଇ ଟସର ପୋକ ପାଳନ କରାଯାଏ ।

କେନ୍ଦୁଝର, ବାଂଶପାଳ, ଘଟଗାଁ, ହରିଚନ୍ଦନପୁର ଓ ତେଲକୋଇ ବ୍ଲକ୍‌ରେ ଏହି ରେଶମ ଶିଳ୍ପ ସଫଳ ଭାବେ କାର୍ଯ୍ୟ କରୁଛି । ଶହ ଶହ ଚାଷୀ ମଲବରୀ, ତୁତ ଚାଷ କରି ଲାଭବାନ ହେଉଛନ୍ତି ।

### ମାଛଚାଷ—

୧୯୮୮ ମସିହାରେ କେନ୍ଦୁଝର ଠାରେ ମତ୍ସ୍ୟଜୀବୀ ଉନ୍ନୟନ ସଂସ୍ଥା ଗଠନ କରାଯାଇଛି । ଏହି ସଂସ୍ଥାଦ୍ୱାରା ମାଛଚାଷ ସମ୍ପର୍କୀୟ ବିଧିବଦ୍ଧ ବ୍ୟବସ୍ଥା କରାଯାଇଥାଏ । ଏଠାରେ ତାଲିମ ବ୍ୟବସ୍ଥା ମଧ୍ୟ କରାଯାଇଛି । ମାଛଚାଷ ପାଇଁ ଅସଂଖ୍ୟ ଜଳଭଣ୍ଡାରକୁ ମଧ୍ୟ ବ୍ୟବହାର କରାଯାଉଛି । ଯଥା—କାନ୍‌ଝାରୀ, ଅରଡ଼େଇ, ଧକୋଠା ଗଡ଼, ଖଜୁରିଆ, ସାନ ମାଛ କାନ୍ଦଣା, ରେମାଳ ଓ ହଦଗଡ଼ ଜଳଭଣ୍ଡାର । ଏଠାରେ ବିଶ୍ୱବ୍ୟାଙ୍କ୍ ସହାୟତାରେ ମାଛଚାଷ କରାଯାଏ ।

ମାଛଚାଷୀଙ୍କ ପାଇଁ କେନ୍ଦୁଝରର ଉଗ୍‌ଦାନ, ଝୁମ୍ପୁରା, ତେଲକୋଇ, ମୂଷାଖୋରୀ ଓ ମଚ୍ଛାଳ ଠାରେ ପାଞ୍ଚୋଟି ମାଛ ଜାଆଁଳ ଉତ୍ପାଦନ ଓ ବିକ୍ରୟ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ମୋଟ ୨୬ଟି ପ୍ରାଥମିକ ମତ୍ସ୍ୟଚାଷୀ ସମବାୟ ସମିତି ଓ ଗୋଟିଏ କେନ୍ଦ୍ର ମତ୍ସ୍ୟଜୀବୀ ସମବାୟ ସମିତି ମାଧ୍ୟମରେ ମତ୍ସ୍ୟଜୀବୀମାନେ ନିଜର ଅର୍ଥନୀତିକୁ ଉନ୍ନତ କରିବା ସଙ୍ଗେ ସଙ୍ଗେ ମତ୍ସ୍ୟ ଯୋଗାଣରେ ସହାୟତା କରୁଛନ୍ତି ।

### ପଶୁପାଳନ—

କେନ୍ଦୁଝର ଜିଲ୍ଲାରେ ଦେଶୀ ଗାଈମାନଙ୍କର ଦୁଗ୍ଧ-ଦାନ କ୍ଷମତା ନିମ୍ନମାନର ଥିବାରୁ ଗୋସମ୍ପଦର ବିକାଶ ପାଇଁ ୫୦ଟି ପ୍ରଜନନ କେନ୍ଦ୍ର ମାଧ୍ୟମରେ ଦେଶୀ ଓ ଶଙ୍କରଜାତୀୟ ଗାଈଗୋରୁଙ୍କ ପ୍ରଜନନର ବ୍ୟବସ୍ଥା କରାଯାଇଛି । ୧୦୨ଟି ପ୍ରାଥମିକ ଦୁଗ୍ଧ ଉତ୍ପାଦନ ସମବାୟ ସମିତି ମାଧ୍ୟମରେ ଚାଷୀମାନଙ୍କଠାରୁ ଦୁଗ୍ଧ ସଂଗ୍ରହ କରାଯାଏ ।

ବିଭିନ୍ନପ୍ରକାର ଯୋଜନା ମାଧ୍ୟମରେ ଶଙ୍କର ବାଛୁରୀ, ଘୁଷୁରୀ, ଉନ୍ନତ ଛେଳି, କୁକୁଡ଼ା ପାଳନ ତଥା ତୃଣ ବୃଦ୍ଧି ପାଇଁ ବ୍ୟବସ୍ଥା କରାଯାଇଛି ।

ଭାରତର ଦୁଗ୍ଧବନ୍ୟା ଯୋଜନାରେ କେନ୍ଦୁଝର ଜିଲ୍ଲାକୁ ଅଗ୍ରାଧିକାର ଭିତ୍ତିରେ ଗ୍ରହଣ କରାଯାଇଥିଲା । ୧୯୮୧ ମସିହାରେ କେନ୍ଦୁଝର ଜିଲ୍ଲା ସମବାୟ ଦୁଗ୍ଧ ଉତ୍ପାଦକ ସଙ୍ଘ ସମବାୟ ଭିତ୍ତିରେ 'ଆନନ୍ଦ' ପ୍ରଣାଳୀରେ ଗଠନ କରାଯାଇଥିଲା । ଏହି ସମବାୟ ଦୈନିକ ହାରାହାରି ୬୦୦୦ ଲିଟର ଦୁଗ୍ଧ ସଂଗ୍ରହ କରିପାରୁଛି ।

## ଆଞ୍ଚଳିକ କୃଷି ଗବେଷଣା କେନ୍ଦ୍ର :

ଆଞ୍ଚଳିକ ଭିତ୍ତିରେ କୃଷିର ବୈଷୟିକ ସମସ୍ୟା ନିର୍ଦ୍ଧାରଣ ଓ ଗବେଷଣା ମାଧ୍ୟମରେ ସମାଧାନ ପନ୍ଥା ନିର୍ଣ୍ଣୟ କରିବା ନିମିତ୍ତ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଅଧୀନରେ ୧୯୭୮ ମସିହାରେ ଜନ୍ମଲାଭ କଲା କେନ୍ଦୁଝରସ୍ଥ "ଆଞ୍ଚଳିକ କୃଷି ଗବେଷଣା କେନ୍ଦ୍ର" (ପୁଡ଼ିଆ ଫାର୍ମ) । ଓଡ଼ିଶାର ଉତ୍ତର ମଧ୍ୟ-ପାର୍ବତ୍ୟ କୃଷି ଜଳବାୟୁ ମଣ୍ଡଳ ଅନ୍ତର୍ଗତ ହେଉଥିବା କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲା ପାଇଁ ଏହା ଉଦ୍ଦିଷ୍ଟ ।

ଆଞ୍ଚଳିକ ଗବେଷଣା କେନ୍ଦ୍ରଦ୍ୱାରା ସମ୍ପାଦିତ ମୁଖ୍ୟ କାର୍ଯ୍ୟକ୍ରମଗୁଡ଼ିକ ହେଲା—

(୧) କୃଷି ସମ୍ବନ୍ଧୀୟ ଗବେଷଣା ।
(୨) କୃଷି ଉପଦେଷ୍ଟା ତଥା କୃଷି ସମ୍ବନ୍ଧୀୟ ତାଲିମ କାର୍ଯ୍ୟକ୍ରମ ।
(୩) ଉନ୍ନତମାନର ବିହନ ତଥା କଲମୀ ଗଛ ଉତ୍ପାଦନ ଓ ଯୋଗାଣ ।
(୪) କୃଷିଭିତ୍ତିକ ଗବେଷଣାଲବ୍ଧ ଜ୍ଞାନର କ୍ଷେତ୍ର ପ୍ରଦର୍ଶନ ।

## (୧) କୃଷି ସମ୍ବନ୍ଧୀୟ ଗବେଷଣା :

ଓଡ଼ିଶାର ଉତ୍ତର ମଧ୍ୟ-ପାର୍ବତ୍ୟ କୃଷି ଜଳବାୟୁ ମଣ୍ଡଳରେ କୃଷିକ୍ଷେତ୍ରରେ ଦେଖାଦେଉଥିବା ବିଭିନ୍ନ ବୈଷୟିକ ସମସ୍ୟାଗୁଡ଼ିକର କ୍ଷିପ୍ର ଗ୍ରାମୀଣ ମୂଲ୍ୟାୟନ ପଦ୍ଧତିରେ ଅନୁଧ୍ୟାନ କରି ପ୍ରାଧାନ୍ୟ ନିରୂପଣ କରାଯାଇଛି । ଯେଉଁ ସମସ୍ୟାର ସମାଧାନ ଦ୍ୱାରା ଚାଷୀ ଅଧିକ ଉପକୃତ ହୋଇପାରିବ, ସେହି ସମ୍ବନ୍ଧୀୟ ଗବେଷଣାକୁ ଅଗ୍ରାଧିକାର ଦିଆଯାଏ । ଏହି ଅଞ୍ଚଳରେ ଶତକଡ଼ା ୭୫ଭାଗ ଜମି ବର୍ଷା ଉପରେ ନିର୍ଭରଶୀଳ । ସମତଳ, ଖାଲ ଓ ମଧ୍ୟମ କିସମ ଜମି ତୁଳନାରେ ପାହାଡ଼ିଆ ଉଚ୍ଚା ଅବକ୍ଷୟପ୍ରାପ୍ତ ଓ ଅବକ୍ଷୟ ଘଟୁଥିବା ଜମିର ପରିମାଣ ଅପେକ୍ଷାକୃତ ଅଧିକ । ଏହିସବୁ ଦୃଷ୍ଟିରୁ ବର୍ଷା ନିର୍ଭରଶୀଳ କୃଷି ଏବଂ ଅବକ୍ଷୟପ୍ରାପ୍ତ ଉଚ୍ଚ ଓ ପାହାଡ଼ିଆ ଜମିର ପରିଚାଳନା ଉପରେ ଗବେଷଣାକୁ ଅଧିକ ପ୍ରାଧାନ୍ୟ ଦିଆଯାଉଛି । ଏହାଛଡ଼ା ଏହି କୃଷି ଜଳବାୟୁ ଅଞ୍ଚଳରେ ଚାଷ କରାଯାଉଥିବା ମୁଖ୍ୟକ୍ଷେତ୍ର ଓ ଉଦ୍ୟାନ ଫସଲ-ଗୁଡ଼ିକରୁ ଅଧିକ ଉତ୍ପାଦନ ପାଇବାପାଇଁ ବୈଜ୍ଞାନିକ କୌଶଳ ଓ ରୋଗ ପୋକ

ଦାହାକୁ ଫସଲଗୁଡ଼ିକୁ ରକ୍ଷା କରିବାର କୌଶଳ ନିର୍ଦ୍ଧାରଣ କରାଯାଏ । ବିଭିନ୍ନ କିସମ ଜମି ପାଇଁ ଫସଲ ଓ ଫସଲ ପର୍ଯ୍ୟାୟ ନିରୂପଣ, ନୂତନ ଫସଲ ଗୁଣ, ମୃତ୍ତିକାର ଉତ୍ପାଦିକା ଶକ୍ତି ବୃଦ୍ଧି, ଅବକ୍ଷୟପ୍ରାପ୍ତ ଜମିରେ ମୃତ୍ତିକା ଓ ଜଳ ସଂରକ୍ଷଣର ଉପାୟ ତଥା କୃଷିଭିତ୍ତିକ ବନୀକରଣ ମାଧ୍ୟମରେ ଉତ୍ପାଦନ ବୃଦ୍ଧି ପ୍ରଭୃତି ବିଷୟରେ ଗବେଷଣା କରାଯାଇଥାଏ । ଏହାଛଡ଼ା କୃଷିକ୍ଷେତ୍ରରେ ଦେଖାଦେଉଥିବା ନୂଆ ନୂଆ ବୈଷୟିକ ସମସ୍ୟାଗୁଡ଼ିକର ଗବେଷଣା ମାଧ୍ୟମରେ ସମାଧାନ ଖୋଜି ବାହାର କରିବାରେ ଏ ଅନୁଷ୍ଠାନ ମୁଖ୍ୟ ଭୂମିକା ଗ୍ରହଣ କରେ । ପ୍ରତିବର୍ଷ ଖରିଫ ଓ ରବି ଋତୁର ଆରମ୍ଭ ପୂର୍ବରୁ ଗବେଷଣା ଫଳାଫଳ ବିଷୟ ଆଲୋଚନା କରାଯାଏ ଓ ନୂତନ ଗବେଷଣାର ଦିଗ ସ୍ଥିର କରାଯାଏ ।

## (୨) କୃଷି ଉପଦେଷ୍ଟା ତଥା କୃଷି ସମ୍ବନ୍ଧୀୟ ତାଲିମ କାର୍ଯ୍ୟକ୍ରମ :

ଗବେଷଣାଲବ୍ଧ ଜ୍ଞାନକୁ ଭିତ୍ତିକରି ପ୍ରତି ମାସରେ କେଉଁ ଫସଲରେ ଚାଷୀମାନେ କ'ଣ କ'ଣ କାର୍ଯ୍ୟକ୍ରମ ଗ୍ରହଣ କରିବେ, ସେ ବିଷୟରେ ଆଞ୍ଚଳିକ ଗବେଷଣା କେନ୍ଦ୍ରର ବୈଜ୍ଞାନିକ ଓ ସରକାରଙ୍କ କୃଷି ଓ ତତ୍ସଂଶ୍ଳିଷ୍ଟ ଉଦ୍ୟାନ, ମୃତ୍ତିକା ସଂରକ୍ଷଣ, ସାମାଜିକ ବନୀକରଣ, ପଶୁପାଳନ ଓ ମତ୍ସ୍ୟ ପ୍ରଭୃତି ବିଭାଗର ବରିଷ୍ଠ ବିଶେଷଜ୍ଞଙ୍କର ପୁଙ୍ଖାନୁପୁଙ୍ଖ ଆଲୋଚନା ହୋଇ ଚାଷୀମାନଙ୍କ ପାଇଁ ଏକ କୃଷି ସୂଚନା ସ୍ଥିର କରାଯାଏ ଏବଂ କୃଷି ଅଫିସର ତଥା ଗ୍ରାମ୍ୟ କୃଷି କର୍ମଚାରୀମାନଙ୍କ ସହାୟତାରେ ସେହିସବୁ ବିଷୟ ଚାଷୀମାନଙ୍କୁ ପରାମର୍ଶ ଦିଆଯାଏ । ଏହାଛଡ଼ା ପାଣିପାଗଭିତ୍ତିକ କୃଷି ଉପଦେଶ ମଧ୍ୟ ଚାଷୀମାନଙ୍କୁ ସୂଚାଇ ଦିଆଯାଏ ।

ଆଞ୍ଚଳିକ ଗବେଷଣା କେନ୍ଦ୍ରର ବୈଜ୍ଞାନିକମାନେ କୃଷି, ଉଦ୍ୟାନ, ମୃତ୍ତିକା ସଂରକ୍ଷଣ ପ୍ରଭୃତି ବିଭାଗଦ୍ୱାରା ଆୟୋଜିତ କାର୍ଯ୍ୟକ୍ରମରେ ଯୋଗଦାନ କରି ଚାଷୀମାନଙ୍କୁ ଆଧୁନିକ କୃଷି ପଦ୍ଧତି ଉପରେ ତାଲିମ ପ୍ରଦାନ କରିଥାନ୍ତି । ଏହାଛଡ଼ା ଆଞ୍ଚଳିକ ଗବେଷଣା କେନ୍ଦ୍ର ଅନ୍ତର୍ଗତ କୃଷି ବିଜ୍ଞାନ କେନ୍ଦ୍ରର ବୈଜ୍ଞାନିକମାନେ ଚାଷୀମାନଙ୍କ ଆବଶ୍ୟକତା ଉପରେ ଆଧାରିତ ବିଭିନ୍ନ ଧନ୍ଦାମୂଳକ ତାଲିମ ଚାଷୀମାନଙ୍କୁ ଓ କ୍ଷେତ୍ରୀୟ ସଂପ୍ରସାରଣ କର୍ମୀମାନଙ୍କୁ ଦେଇଥାନ୍ତି ।

## (୩) ଉନ୍ନତମାନର ବିହନ ତଥା କଲମୀ ଚାରା ଉତ୍ପାଦନ ଓ ଯୋଗାଣ :

ଏହି ଗବେଷଣା କେନ୍ଦ୍ରରେ ଧାନ ତଥା ଅନ୍ୟାନ୍ୟ କେତୋଟି ମୁଖ୍ୟ ଫସଲର ପିତୃକ, ମୂଳ ତଥା ପ୍ରାମାଣିକ ବିହନ ଉତ୍ପାଦନ କରାଯାଏ ଏବଂ ସରକାରଙ୍କର କୃଷି, ଉଦ୍ୟାନ, ମୃତ୍ତିକା ସଂରକ୍ଷଣ ବିଭାଗ, ଓଡ଼ିଶା ରାଜ୍ୟ ବିହନ ନିଗମ, ବିଭିନ୍ନ ବେସରକାରୀ ଅନୁଷ୍ଠାନ ତଥା କୃଷକମାନଙ୍କୁ ଉଚିତ୍ ମୂଲ୍ୟରେ ଯୋଗାଇ ଦିଆଯାଏ ।

ଏହା ବ୍ୟତୀତ ଉନ୍ନତକିସମର କଲମୀ ଆମ୍ବଗଛ, ପିଜୁଳି ଗୁଡି ଗଛ ତଥା ଅନ୍ୟାନ୍ୟ ଫଳ ଗଛ ମଧ୍ୟ ପ୍ରସ୍ତୁତ କରାଯାଇ ସରକାରଙ୍କର ଉଦ୍ୟାନ, ମୃତ୍ତିକା ସଂରକ୍ଷଣ ବିଭାଗ ତଥା ଚାଷୀମାନଙ୍କୁ ସିଧାସଳଖ ଯୋଗାଇ ଦିଆଯାଇଥାଏ । ଶୀତଦିନିଆ ଧିଙ୍ଗିରି ଛତୁର ମଞ୍ଜି ଉତ୍ପାଦନ କରାଯାଇ ଚାଷୀମାନଙ୍କୁ ଯୋଗାଇଦେବା ସହିତ ଏହାର ଚାଷ ପ୍ରଣାଳୀ ଶିକ୍ଷା ଦିଆଯାଇଥାଏ ।

### (୪) କୃଷିଭିତ୍ତିକ ଗବେଷଣାଲବ୍ଧ ଜ୍ଞାନର କ୍ଷେତ୍ର ପ୍ରଦର୍ଶନ :

ଭାରତୀୟ କୃଷି ଗବେଷଣା ପରିଷଦର ଆର୍ଥିକ ସହାୟତାରେ ଏବଂ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ ବିଭିନ୍ନସମୟରେ ଚାଷୀଙ୍କ ବିଲରେ ଚାଷୀଙ୍କ ସହାୟତାରେ କ୍ଷେତ୍ର ପ୍ରଦର୍ଶନ ମାଧ୍ୟମରେ ବିଭିନ୍ନ ନୂତନ ବୈଜ୍ଞାନିକ କୌଶଳ ପ୍ରଦଶନ କରାଯାଇଥାଏ । ଏହା ଚାଷୀମାନଙ୍କୁ କିଛି ଶିଖିବାର ସୁଯୋଗ ଦିଏ ।

( ଏହି ସୂଚନାଟି କୃଷି ଗବେଷଣା କେନ୍ଦ୍ରର କର୍ମକର୍ତ୍ତାଙ୍କ ସୌଜନ୍ୟରୁ ପ୍ରାପ୍ତ )



# କେନ୍ଦୁଝରର ଭୂସଂପଦ

ହିସାବରୁ ଜଣାପଡ଼ିଛି, କେନ୍ଦୁଝର ଜିଲ୍ଲାରେ ୨ ହଜାର ୩ ଶହ ୭୯ ନିୟୁତ ଟନ୍ ଲୌହ ଧାତୁ-ପ୍ରସ୍ତର ଗଚ୍ଛିତ ଅଛି, ଯାହାର ପରିମାଣ ସମଗ୍ର ଭାରତରେ ଗଚ୍ଛିତ ଥିବା ଲୌହ ଧାତୁ-ପ୍ରସ୍ତରର ୧୯.୮% । ସେହିପରି ସମଗ୍ର ଓଡ଼ିଶାରେ ଗଚ୍ଛିତ ଥିବା ୧୩ ନିୟୁତ ଟନ୍ ମାଙ୍ଗାନିଜ ଧାତୁ-ପ୍ରସ୍ତର ମଧ୍ୟରୁ କେବଳ କେନ୍ଦୁଝର ଜିଲ୍ଲାରେ ୨୮.୪୦ ନିୟୁତ ଟନ୍ ଗଚ୍ଛିତ ଅଛି । କେବଳ ସେତିକି ନୁହେଁ, କେନ୍ଦୁଝର ଜିଲ୍ଲାରେ କ୍ରୋମାଇଟ୍, ପାଇରୋଫିଲାଇଟ୍, ମାଗ୍ନେଟାଇଟ୍, ସୋପଷ୍ଟୋନ୍ ଏବଂ ବକ୍ସାଇଟ୍ ପ୍ରଭୃତି ଧାତୁ-ପ୍ରସ୍ତର ମଧ୍ୟ ପ୍ରଚୁର ପରିମାଣରେ ଗଚ୍ଛିତ ରହିଛି । ତେଲକୋଇର ସଲେଇକଣା ଏବଂ ବାଂଶପାଳ ଅଞ୍ଚଳରେ ପୁରାତନ ସୁନାଖଣିର ମଧ୍ୟ ସନ୍ଧାନ ମିଳିଛି । ଏହି ଜିଲ୍ଲାରେ ଥିବା ଗ୍ରାନାଇଟ୍ ପଥରର ମାନ ଉଚ୍ଚକୋଟୀର ହୋଇଥିବାରୁ ଏହାର ଚାହିଦା ବୃଦ୍ଧି ପାଉଛି । ତେଣୁ କେନ୍ଦୁଝର ଜିଲ୍ଲା କେବଳ ପ୍ରାକୃତିକ ଶୋଭା ସଂପଦରେ ଭରପୂର ନୁହେଁ, ଏହା ଭୂସଂପଦରେ ମଧ୍ୟ ପରିପୂର୍ଣ୍ଣା ବୋଲି ଆମକୁ ମନେରଖିବାକୁ ହେବ ।

**କେଉଁଠି କେଉଁ ଧାତୁ ମିଳେ—**

ଲୁହାପଥର—ବଲାଣି, ଯୋଡ଼ା, ବାଂଶପାଣି, ଝିଣ୍ଡ୍ରବନ୍ଧ, ସିଦ୍ଧମଠ, କାଣିଆ-ବରପଦା, ଠାକୁରାଣୀ, ଜିଲିଙ୍ଗ୍-ଲଙ୍ଗଲଟା, ଜଜାଙ୍ଗ, ମାଲଙ୍ଗ୍‌ଟୋଲି, ଗନ୍ଧମାର୍ଦ୍ଦନ ଏବଂ ଦୈତାରୀ । (ଓଡ଼ିଶାର ୮୨ ଭାଗ)

ମାଙ୍ଗାନିଜ ପଥର—ଗୁରୁଡ଼ା, ରଇଡ଼ା, ସିଦ୍ଧମଠ, ଯୋଡ଼ା, ହରମଠ, ଏବଂ ଗୋଆଲି । (ଓଡ଼ିଶାର ୫୮ ଭାଗ)

ଆଲୁମିନିୟମ (ବକ୍ସାଇଟ୍)—କୁଆଁରଠାରେ ଡୋଲକଟା ପାହାଡ଼ ।
(୧୦ ନିୟୁତ ଟନ୍ ପଥର ଗଚ୍ଛିତ ଅଛି ।)

କ୍ରୋମିୟମ—ବଉଲା ନୁଆସାହି (୪ ନିୟୁତ ଟନ୍ ଗଚ୍ଛିତ ଅଛି ।)
ସୁନା—ତେଲକୋଇ ବ୍ଲକ୍‌ର ହଟଲେଇକେନା ଓ କରଦାଙ୍ଗି ଏବଂ ବାଂଶପାଳର
ଜଳଡ଼ିହା ଓ ଗୋପପୁର ।
ଡୋଲମାଇଟ୍—କାଶିଆ—ଭଦ୍ରାସାହି
ପାଇରୋଫିଲାଇଟ୍—ପିଠାଗୋଳାଠାରୁ ନାରଦପୁର, ଯଥା—ମଦରଙ୍ଗା ପୋଡ଼, ମାଛ କାନ୍ଦଣା ଓ ଡାଲିମପୁର ।
କ୍ୱାର୍ଜ କ୍ୱାର୍ଜାଇଟ୍—କରପଦା, ବୋଗଙ୍ଗ, ପାହାଡ଼ପୁର ଓ ପର୍ଣ୍ଣଳା ।
ଭନାଡିୟମ୍—(ମାଗ୍ନେଟାଇଟ୍ ପଥର) କେନ୍ଦୁଝର ନୂଆସାହି ।
ଖଡ଼ିପଥର—ଧକୋଠା, ଡାଲିମପୁର, ପିଠାଗୋଳା ।

**ନିକଟରେ ଅନୁସନ୍ଧାନ ଚାଲିଛି**

ପିଠାଗୋଳା—ପାଇରୋଫିଲାଇଟ୍ ଓ ଅନ୍ୟାନ୍ୟ ପଦାର୍ଥ ।
ବାଂଶପାଳର ଗଞ୍ଜପୁର, ଶଙ୍ଖ ଖୋଲ—ସୁନା ।
କାଳିଆହଣ୍ଡା—ମୂଲ୍ୟବାନ ପଥର ।

**କେନ୍ଦୁଝରର ଖଣିଜ-ଭିତ୍ତିକ ଶିଳ୍ପ—**

୧ । ଟାଟା କମ୍ପାନୀର ଚାର୍ଜ କ୍ରୋମ୍ କାରଖାନା—ବ୍ରାହ୍ମଣୀପାଳ
୨ । ଫେକର୍ କମ୍ପାନୀର କ୍ରୋମାଇଟ୍ ବିଶୁଦ୍ଧିକରଣ କାରଖାନା—ବଉଳା
୩ । କଳିଙ୍ଗ ଆଇରନ୍ ୱାର୍କସ୍‌ର ଲୁହା କାରଖାନା—ବଡ଼ବିଲ
୪ । ଟାଟା କମ୍ପାନୀର ଫେରୋମାଙ୍ଗାନିଜ୍ କାରଖାନା—ଯୋଡ଼ା
୫ । ଓଡ଼ିଶା ସ୍ପଞ୍ଜ ଆଇରନ୍ ଲିଃର ସ୍ପଞ୍ଜ ଲୁହା କାରଖାନା—ପଲାଶପଙ୍ଗା
୬ । ଟାଟା କମ୍ପାନୀର ସ୍ପଞ୍ଜ ଲୁହା କାରଖାନା—ବିଲେଇପଦା
୭ । ପାଇରୋଫିଲାଇଟ୍ ଚୂର୍ଣ୍ଣୀକରଣ କାରଖାନା—ଧୁପଦା, ବାମ୍ପାର ଓ ଯୋଡ଼ାଠାରେ ଅବସ୍ଥିତ ।

ପ୍ରଚୁର ଭୂସମ୍ପଦ ଉପଲବ୍ଧ ଥିବାରୁ ନିକଟ ଭବିଷ୍ୟତରେ ଅସଂଖ୍ୟ ଛୋଟବଡ଼ ଖଣିଜଭିତ୍ତିକ ଶିଳ୍ପ ଗଢ଼ି ଉଠିବାର ସମ୍ଭାବନା ରହିଛି । ବାଂଶପାଣି ଦୈତାରି ରେଳପଥ ନିର୍ମାଣ ଶେଷ ହେଲେ, ଏହି ସମ୍ଭାବନା ଆହୁରି ସ୍ପଷ୍ଟ ହୋଇଯିବ ।



# କେନ୍ଦୁଝରରେ ଶିଳ୍ପ

ଖଣିଜସମ୍ପଦଭରା କେନ୍ଦୁଝର ଜିଲ୍ଲାରେ କେବଳ ପ୍ରଚୁର ଜଙ୍ଗଲଜାତ ଦ୍ରବ୍ୟ ଉପଲବ୍ଧ ନୁହେଁ, ଶ୍ରମଜୀବୀ ଲୋକଶକ୍ତି ମଧ୍ୟ ସହଜଲବ୍ଧ । ତଥାପି ଆବଶ୍ୟକ ରେଳ ସଂଯୋଗ, ଶିଳ୍ପାନୁସଙ୍ଗିକ ସୁଯୋଗ ଏବଂ ଔଦ୍ୟୋଗିକ କୁଶଳତା ଅଭାବରୁ ଏହି ଜିଲ୍ଲାରେ ଆଶାନୁରୂପ ଶିଳ୍ପ ପ୍ରତିଷ୍ଠା କରାଯାଇପାରିନାହିଁ ।

## କେନ୍ଦୁଝରରେ ପ୍ରତିଷ୍ଠିତ କେତୋଟି ବୃହତ୍ ଓ ମଧ୍ୟମ ଶିଳ୍ପ—

୧ । ଟାଟା ଷ୍ଟିଲ୍ ଆଇରନ୍ ଲି.—ବିଲେଇପଦା
୨ । କଳିଙ୍ଗ ଆଇରନ୍ ୱାର୍କସ୍—ବଡ଼ବିଲ (ମାନ୍‌କାମବେଡ଼ା)
୩ । କଳିଙ୍ଗ ସ୍ପନ୍ ପାଇପ୍ ପ୍ଲାଣ୍ଟ—ବଡ଼ବିଲ ,,
୪ । ଓଡ଼ିଶା ସ୍ପଞ୍ଜ ଆଇରନ୍ ଲି.—ପଲାଶପଙ୍ଗା
୫ । ଡର୍ବି ଇଣ୍ଡଷ୍ଟ୍ରିଆଲ ପ୍ରୋଜେକ୍ଟ—ବଡ଼ବିଲ
୬ । ଫେରୋମାଙ୍ଗାନିଜ୍ ପ୍ଲାଣ୍ଟ—(ଟିସ୍କୋ)—ଯୋଡ଼ା
୭ । ଓଡ଼ିଶା ଟି ପ୍ଲାଣ୍ଟେସନ୍ ଲି:—ତରମାକାନ୍ତ
୮ । ଫେରୋ ଆଲ୍‌ଓ ପ୍ଲାଣ୍ଟ—ବ୍ରାହ୍ମଣୀପାଳ
୯ । ବାବର୍ ବନସ୍ପତି—ସୁଆଁପଦା
୧୦ । ବଲ୍ଲଭ ଓଡ଼ିଶା—ଗୋପାଳପୁର

## କେତୋଟି ମୁଖ୍ୟ କ୍ଷୁଦ୍ରଶିଳ୍ପ—

| ଶିଳ୍ପର ନାମ | ସ୍ଥାନ | ଉତ୍ପାଦିତ ଦ୍ରବ୍ୟ |
|---|---|---|
| ୧ । ଭାରତ ଆଗ୍ରୋ ଇଣ୍ଡଷ୍ଟ୍ରି | ଝଲଣା | କାଜୁ |
| ୨ । ପ୍ରାଚୀ ଆଲୁମିନିୟମ | ନହଙ୍ଗ | ବାସନକୁସନ |

| | | |
|---|---|---|
| ୩ । ଷ୍ଟିଲ୍ ଟନ୍ | ବଡ଼ବିଲ | ଲୁହାସାମଗ୍ରୀ |
| ୪ । ଦେବୀ ଇଂଜିନିୟରିଂ | କେନ୍ଦୁଝର | ,, |
| ୫ । କଳିଙ୍ଗ ଟିନ୍ କଣ୍ଟେନର | ମାଧପୁର (କେନ୍ଦୁଝର) | ,, |
| ୬ । ମୟୂର ଓ୍ୱାରନେଲ ଇଣ୍ଡଷ୍ଟ୍ରି | ଧ୍ରୁପଦା | କଣ୍ଟା ଓ ତାର |
| ୭ । ସାଇ ଫରମାସିଉଟିକାଲ | ଘଟିପୁର | ଔଷଧ |
| ୮ । ଉତ୍କଳ ମିନେରାଲ | ବାଁମପାଲ | ପ୍ୟାରୋଫିଲାଇଟ ପାଉଡ଼ର |
| ୯ । ମଡ଼ର୍ଣ୍ଣ ମିନେରାଲ | ବନେଇକଳା | ମାଙ୍ଗାନିଜ୍ ପାଉଡର |
| ୧୦ । ଉତ୍କଳ ମିନେରାଲ | ଧ୍ରୁପଦା | ପ୍ୟାରୋଫିଲାଇଟ ପାଉଡ଼ର |
| ୧୧ । ମହାରାଜା ମିନେରାଲ | ସୋସୋ | କ୍ରୋମ ବେନିଫିକେସନ |

**କେନ୍ଦୁଝର ଜିଲାରେ ସ୍ଥାପିତ କୁଟୀର ଶିଳ୍ପ—**

୧ । ପଥର ଖୋଦେଇ କାମ—ଧକୋଠା
୨ । ଢୋକରା କାଷ୍ଟିଂ—ତେଲକୋଇ
୩ । ନଡ଼ିଆକତା ଶିଳ୍ପ—ଘଟଗାଁ
୪ । ହାତ ତିଆର ଆଲୁମିନିୟମ—କୋଲିମାଟି
୫ । ଟସର ବୟନ ଶିଳ୍ପ—ଫକୀରପୁର, ଟେଙ୍ଗିକୋଟ
୬ । ଖୋଟ ଶିଳ୍ପ—ମଝୋଇଗାଁ,
୭ । ବାଉଁଶ ଶିଳ୍ପ—ତେଲକୋଇ
୮ । ମୃତ୍ତିକା ଶିଳ୍ପ—ହରଚନ୍ଦନପୁର ବକ୍ସିବାରଗାଁ (ଟେରାକୋଟା)
୯ । କାଷ୍ଠ ଶିଳ୍ପ—କେନ୍ଦୁଝରର ବିଭିନ୍ନ ଗ୍ରାମ

**୧୦ । ଖଦୀ ଓ ଗ୍ରାମ୍ୟଶିଳ୍ପ—**

କେନ୍ଦୁଝର ଜିଲ୍ଲାରେ ୧୩ଟି ବ୍ଲକ୍‌ରେ ବହୁମୁଖୀ ଶିଳ୍ପ ସମବାୟ ସମିତି ମାଧ୍ୟମରେ ଗ୍ରାମ୍ୟଶିଳ୍ପ ଓ କୁଟୀର ଶିଳ୍ପ ସ୍ଥାପିତ ହୋଇ ଏହାର ବିକାଶ କରାଯାଇଛି ।



# କେନ୍ଦୁଝରର ଲୋକନୃତ୍ୟ

ପ୍ରାଚୀନ ଯୁଗରେ ଉନ୍ନତ କଳାର କେନ୍ଦ୍ରସ୍ଥଳୀ ଥିଲା—ଓଡ଼ିଆମାନଙ୍କର କର୍ମଭୂମି-ଜନ୍ମଭୂମି ଉତ୍କଳଖଣ୍ଡ । ତେଣୁ ନୃତ୍ୟର ବିକାଶ କ୍ଷେତ୍ରରେ ଏହି ମାଟିର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତେବେ ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ବିଚାର କଲେ ଲକ୍ଷ୍ୟ କରାଯାଏ—ଓଡ଼ିଶାର ବିଭିନ୍ନ ଅଞ୍ଚଳର ପ୍ରାକୃତିକ ପରିବେଶ ଓ ପରିସ୍ଥିତି ବହୁଳ ପରିମାଣରେ ସ୍ୱତନ୍ତ୍ର । ତେଣୁ ବିଭିନ୍ନ ଅଞ୍ଚଳର ବିଭିନ୍ନତା ମଧ୍ୟରେ ଭିନ୍ନରୁଚିର କଳା ପ୍ରକାଶ ପାଇବା ସ୍ୱାଭାବିକ ।

ଲୋକକଳାର ସ୍ରଷ୍ଟା କେହି ଜଣେ କଳାକାର ନୁହେଁ । ଏହା କୌଣସି ଗୁରୁ ବା ପରାମର୍ଶଦାତାଙ୍କର ପ୍ରେରଣା ଦ୍ୱାରା ଗଶ୍ୱାସ୍ଥାନ ହୋଇନାହିଁ । ପ୍ରକୃତି ହେଉଛି, ଏହାର ସ୍ୱୟଂସ୍ରଷ୍ଟା ଏବଂ ପ୍ରେରଣାଦାତା । ସମଗ୍ର ମାନବଜାତି ହେଉଛି—ଏହାର ରକ୍ଷକ ତଥା ଗ୍ରାହକ । ଝରଣାର କୁଳୁକୁଳୁ ନାଦ, କୋଇଲିର କୁହୁତାନ ଏବଂ ମୟୂରର ଥେଇ ଥେଇ ନୃତ୍ୟରୁ ହିଁ ଆଦିମ ମଣିଷ ନିଜର ମନୋରଞ୍ଜନର ଖୋରାକ ଲାଭ କରିଥିଲା । ତାଙ୍କୁ ଅନୁସରଣ-ଅନୁକରଣ କରି ସୃଷ୍ଟି କରିଥିଲା—ଲୋକନୃତ୍ୟ, ଲୋକଗୀତ ଏବଂ ଲୋକବାଦ୍ୟ ।

କୌଣସି ଭୌଗୋଳିକ ପରିସୀମା ସରହଦକୁ ନମାନି ଆଗକୁ ଆଗକୁ ମାଡ଼ିଯିବା ହେଉଛି—ଲୋକକଳାର ମୌଳିକ ଧର୍ମ । ଏହା କୌଣସି ନିର୍ଦ୍ଦିଷ୍ଟ ଜାତି, ଭାଷାଭାଷୀ ବା ସମ୍ପ୍ରଦାୟ ମଧ୍ୟରେ ସୀମିତ ହୋଇ ରହେନାହିଁ । ମାନବ ହୃଦୟର ଭାଷାକୁ ସେ ଗୀତ ମାଧ୍ୟମରେ, ଅଙ୍ଗଭଙ୍ଗୀ ମାଧ୍ୟମରେ ଅନ୍ୟ ଏକ ମାନବ ହୃଦୟକୁ ସଞ୍ଚରଣ କରିଥାଏ । ଫଳରେ ଲୋକକଳା ସମଗ୍ର ମାନବ ଜାତିର କଳା ହିସାବରେ ସ୍ୱୀକୃତି ଲାଭକରେ । ଏହା ମାନବଜାତିର ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ତାର ସଂସ୍କୃତି ରକ୍ଷାକରେ । ତେଣୁ କେନ୍ଦୁଝରର ମାଟିରୁ ସୃଷ୍ଟି ହୋଇଥିବା କଳା କୋରାପୁଟ

ଜଙ୍ଗଲର କେଉଁ ଏକ ଅଖ୍ୟାତ ପଲ୍ଲୀରେ ଆସର ଜମେଇ ବସିବା କିଛି ଅସ୍ୱାଭାବିକ ବା ଅସମ୍ଭବ କଥା ନୁହେଁ ।

ଘନ ଅରଣ୍ୟପୂର୍ଣ୍ଣ, ଶ୍ୱାପଦସଙ୍କୁଳ, ନିସର୍ଗ ସମ୍ପଦଭରା କେନ୍ଦୁଝର ଜିଲ୍ଲାରେ ପ୍ରକୃତି ଭରିଦେଇଛି, ଅସଂଖ୍ୟ ଲୋଭନୀୟ ପ୍ରାକୃତିକ ଶୋଭା । ଏଇଠି ସୃଷ୍ଟି ହୁଏ— ବିଭିନ୍ନ ଋତୁରେ ପ୍ରକୃତିର ଅନୁପମ ଛନ୍ଦୋମୟ ପରିବେଶ; ଯାହା ଯୁଗଯୁଗ ଧରି ମାନବ ହୃଦୟରେ ଜାଗ୍ରତ କରେ ଏକ ରଚନାତ୍ମକ ଆବେଗ (creative feeling) । ସେଇଥିପାଇଁ ତ କେନ୍ଦୁଝର ମାଟିରେ ଦୃଷ୍ଟିଗୋଚର ହୁଏ—ଅସଂଖ୍ୟ ଲୋକନୃତ୍ୟର ସମାହାର ।

କେନ୍ଦୁଝରରେ ବସବାସ କରୁଥିବା ବିଭିନ୍ନ ସମ୍ପ୍ରଦାୟରେ ଅସଂଖ୍ୟ ପାର୍ବଣ ପାଳିତ ହୁଏ । ସେହି ପାର୍ବଣଗୁଡ଼ିକ ପୁଣି ଆମନ୍ତ୍ରଣ କରେ, ଏକ ବିଶେଷ ନୃତ୍ୟ-ଗୀତମୁଖର ମହୁଆଳି ଅବସରକୁ । ସ୍ୱଭାବତଃ ଆଦିବାସୀମାନଙ୍କର ଦୈନନ୍ଦିନ ଜୀବନ-ଚର୍ଯ୍ୟାରେ ନୃତ୍ୟ-ଗୀତ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ବିଭିନ୍ନ ପାର୍ବଣରେ ମୁଖରିତ ହୋଇଉଠେ, କେନ୍ଦୁଝରର ବିଭିନ୍ନ ସଂପ୍ରଦାୟର ଆଦିବାସୀ ପଲ୍ଲୀ । ଦୀର୍ଘଦିନ ଧରି ଲାଗିରହେ, ଏହି ସଂଗୀତ-ନୃତ୍ୟର ଅଖଣ୍ଡ ମହୋତ୍ସବ । କେବଳ ପାର୍ବଣ ନୁହେଁ, ବିଭିନ୍ନ ସାମାଜିକ ଅନୁଷ୍ଠାନ ଉପଲକ୍ଷେ, ଯଥା—ଜନ୍ମ, ବିବାହ ଏବଂ ମୃତ୍ୟୁ ଭଳି ଅବସରରେ ମଧ୍ୟ କେତେକ ଆଦିବାସୀ ସମାଜରେ ଭିନ୍ନ ଢଙ୍ଗର ନୃତ୍ୟ-ଗୀତର ଆୟୋଜନ ହୋଇଥାଏ ।

କେନ୍ଦୁଝରରେ ବାସ କରୁଥିବା କୋହ୍ଲ ସଂପ୍ରଦାୟରେ ମାଘ ମାସରେ 'ମାଘ ପରବ୍', ଫାଲଗୁନ ମାସରେ 'ବାଆବଙ୍ଗା', ଯମନ୍ନା ପରବ ଏବଂ ଦଶହରା ଉପଲକ୍ଷେ 'ବାଣାଗାଁ ପରବ' ପାଳିତ ହୁଏ । ଏଥିରେ ନୃତ୍ୟ-ସଙ୍ଗୀତ ସାତଦିନ ଧରି ଚାଲେ ।

ସେହିପରି କେନ୍ଦୁଝରର ପ୍ରାଚୀନତମ ଆଦିବାସୀ ଜୁଆଙ୍ଗ ସଂପ୍ରଦାୟ ଓ ଭୂୟାଁମାନଙ୍କର ସ୍ୱତନ୍ତ୍ର ଶୈଳୀର ନୃତ୍ୟ ପରିବେଷିତ ହୋଇଥାଏ । ସାନ୍ତାଳୀ ଭାଇ-ଭଉଣୀମାନେ ଭିନ୍ନ ଶୈଳୀ ନୃତ୍ୟ-ଗୀତରେ କେନ୍ଦୁଝରର ଗିରିକନ୍ଦରକୁ ମୁଖରିତ କରିଥାନ୍ତି । ମହାନ୍ତ ସଂପ୍ରଦାୟରେ କରମା ନାଚ, ଝୁମୁ ଗୀତ ଓ ଝୁମର ନାଚର ପ୍ରଚଳନ ତଥା ଘୁମୁରା ଓ ଭାଲୁକୁଣୀ ଭଳି ଆହୁରି କେତେକ ଲୋକନୃତ୍ୟ କେନ୍ଦୁଝରର ଲୋକକଳାକୁ ସମୃଦ୍ଧ କରିଆସିଛି ।

ଏହି ନୃତ୍ୟଗୁଡ଼ିକ ବ୍ୟତୀତ ଯେଉଁ ଦୁଇଟି ପ୍ରମୁଖ ଲୋକନୃତ୍ୟ କେନ୍ଦୁଝର ତଥା ଉତ୍ତର ଓଡ଼ିଶାର ସଂସ୍କୃତିକୁ ମର୍ଯ୍ୟାଦାବନ୍ତ କରିଛି, ତାହା ହେଲା—ଛଉନୃତ୍ୟ ଏବଂ ପାଇକାଲି ନୃତ୍ୟ ।

ସଂପ୍ରତି ଛଉନୃତ୍ୟ ତାର ସ୍ୱତନ୍ତ୍ର ଶୈଳୀ ପାଇଁ ଶାସ୍ତ୍ରୀୟ ନୃତ୍ୟର ମର୍ଯ୍ୟାଦା ଦାବି କରୁଛି । ଏହା ଯଦିଓ ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତା ଫଳରେ ପ୍ରଚୁର ଲୋକପ୍ରିୟତା ହାସଲ କରିପାରିଥିଲା ଏବଂ ପଶ୍ଚିମବଙ୍ଗର ପୁରୁଲିଆ ଓ ବିହାର ରାଜ୍ୟର ସରାଇକଳା ଅଞ୍ଚଳକୁ ସଂପ୍ରସାରିତ ହୋଇପାରିଥିଲା, ତଥାପି କେନ୍ଦୁଝରର ଅସନପାଟ ଛଉନୃତ୍ୟର ଅବଦାନକୁ ଅସ୍ୱୀକାର କରିହେବ ନାହିଁ । ଅସନପାଟ ବ୍ୟତୀତ ସାହାରପଡ଼ା ବ୍ଲକ୍‌ର ଜାମ୍‌ଦା ଗ୍ରାମ ଓ ଚମ୍ପୁଆ ବ୍ଲକ୍‌ର ସରେଇ ଗ୍ରାମରେ ମଧ୍ୟ ଅଦ୍ୟାପି ଛଉନୃତ୍ୟର ପ୍ରଚଳନ ଦୃଷ୍ଟିଗୋଚର ହୁଏ । ନିକଟ ଅତୀତରେ ଅସନପାଟରୁ ପ୍ରାପ୍ତ ନଟରାଜ ମୂର୍ତ୍ତି ସେ ଅଞ୍ଚଳର ପ୍ରାଚୀନତା ଏବଂ ଛଉନୃତ୍ୟର ପ୍ରଚଳନ ସଂପର୍କରେ ସୂଚନା ଦିଏ । କେଉଁ ଯୁଗରୁ ଏହି ଅସନପାଟବାସୀ ନୃତ୍ୟ ସହିତ ଜଡ଼ିତ, ତାହା ସହଜରେ କଳନା କରିହୁଏ ନାହିଁ । ପାହାଡ଼-ପର୍ବତ, ଜଙ୍ଗଲଘେର ମଧ୍ୟରେ ଅସଂଖ୍ୟ ଲୋକନୃତ୍ୟ ପ୍ରଚଳିତ ଥିବାବେଳେ, ଅସନପାଟ ଥିଲା ଏକ ବ୍ୟତିକ୍ରମ । ଆଭିଜାତ୍ୟସଂପନ୍ନ, ଚିତ୍ତାକର୍ଷକ, ବୀରରସପୂର୍ଣ୍ଣ ଛଉନୃତ୍ୟକୁ ସେମାନେ ଆଦରି ନେଇଛନ୍ତି, କେଉଁ ଏକ ଅନାଦିକାଳରୁ ।

ବିଶ୍ୱାସ କରାଯାଏ—ଏଇ ଅସନପାଟ ଥିଲା ବିଖ୍ୟାତ ଛଉନୃତ୍ୟର ଆଦିଭୂମି । ଏଇ ମାଟିରେ ଛଉନୃତ୍ୟର ବୀଜ ଅଙ୍କୁରିତ ହୋଇ ପରବର୍ତ୍ତୀ କାଳରେ ମୟୂରଭଞ୍ଜ, ପୁରୁଲିଆ ଏବଂ ସରେଇକଲା ମାଟିରେ ମହାଦ୍ରୁମରେ ପରିଣତ ହୋଇପାରିଛି । ତାର ପ୍ରମାଣ ଯୋଗାଏ—ଅସନପାଟରୁ ପ୍ରାପ୍ତ ନଟରାଜ ମୂର୍ତ୍ତି । ସଂପ୍ରତି ଏଠାରେ ଯେଉଁ କେତେଜଣ କଳାକାର ଏହି ନୃତ୍ୟକୁ ବଞ୍ଚାଇ ରଖିଛନ୍ତି, ସେମାନେ କେବଳ ଗଣ୍ଡେ ଖାଇ ଦଣ୍ଡେ ଜୀଇଁବା ଭିତରେ ପରମ୍ପରାକୁ ପାଳନ କରିଚାଲିଛନ୍ତି । ପୃଷ୍ଠପୋଷକତା ଏବଂ ପ୍ରେରଣା ଅଭାବରୁ କେନ୍ଦୁଝରର ମୂଳ ଛଉନୃତ୍ୟର ଅବକ୍ଷୟ ହେବାରେ ଲାଗିଛି । ନିଜସ୍ୱ ଶୈଳୀ ଓ ସ୍ୱତନ୍ତ୍ରତାକୁ ହରାଇବାରେ ଲାଗିଛି । ଯାହା ଅନୁମାନ କରାଯାଏ—ଆଉ କିଛିବର୍ଷ ପରେ ଅନ୍ୟ ରାଜ୍ୟରେ ସମୃଦ୍ଧ ହୋଇଥିବା ଛଉନୃତ୍ୟର ଶୈଳୀ ଅସନପାଟର ମୌଳିକତାକୁ ଲୋପ କରିଦେବ ।

ଛଉନୃତ୍ୟ ଭଳି କେନ୍ଦୁଝରର ଅନ୍ୟ ଏକ ମୌଳିକ ଲୋକନୃତ୍ୟ ହେଲା—ପାଇକାଳି । ଶାସନର ସୁବିଧା ଦୃଷ୍ଟିରୁ କେନ୍ଦୁଝର ରାଜା ନିଜ ରାଜ୍ୟକୁ କେତୋଟି ଦଣ୍ଡପାଟରେ ବିଭକ୍ତ କରିଥିଲେ । ପ୍ରତ୍ୟେକ ଦଣ୍ଡପାଟରେ ପାଇକମାନେ ଅଗ୍ରଗାମୀ ସୈନ୍ୟ ଭାବେ କାର୍ଯ୍ୟ କରୁଥିଲେ । ସେମାନେ ଅବସର ସମୟରେ ଗ୍ରାମୀଣ ପାଇକମାନଙ୍କୁ ଯୁଦ୍ଧ ତାଲିମ ଦେଉଥିଲେ । କିନ୍ତୁ ପାର୍ବତ୍ୟ ଅଞ୍ଚଳରେ ପାଇକମାନଙ୍କ ଅଭାବରୁ ଗଣ୍ଡ ସମ୍ପ୍ରଦାୟର ଲୋକେ ପାଇକ ବୃତ୍ତି କରୁଥିଲେ । ରାଜାଙ୍କ ଆଗମନ ଏବଂ ଶିକାର ଯାତ୍ରା କାଳରେ ଓ ଦଶହରା ଅବସରରେ ଏମାନେ ବୀରରସପୂର୍ଣ୍ଣ ନୃତ୍ୟ

ପ୍ରଦର୍ଶନ କରୁଥିଲେ । ନୃତ୍ୟ ପରିବେଷଣ କାଳରେ କଳାକାରମାନେ ହସ୍ତରେ କଙ୍କଣ, ମଥାରେ ପଗଡ଼ି, କର୍ଣ୍ଣରେ କୁଣ୍ଡଳ, କଟିରେ ଘଣ୍ଟି, କପାଳରେ ସିନ୍ଦୂର ଟିକାରେ ଭୂଷିତ ହୁଅନ୍ତି । ନୃତ୍ୟକାରୀମାନେ ବାମହସ୍ତରେ ଢାଲ ବା ବଦଦ୍ଧ ଏବଂ ଡାହାଣ ହସ୍ତରେ ଖଣ୍ଡା ଧାରଣ କରନ୍ତି । ଢାଲ, ବଦଦ୍ଧ ଓ ଖଣ୍ଡାର ଝନ୍‌ଝନ୍ ଶବ୍ଦରେ ନୃତ୍ୟସ୍ଥଳଟି ପ୍ରକମ୍ପିତ ହେଉଥିଲା । ରାଜା ଏହି ନୃତ୍ୟର ପୃଷ୍ଠପୋଷକ ଥିଲେ, ଫଳରେ ଏହାର ଲୋକପ୍ରିୟତା ବୃଦ୍ଧିପାଇ କେନ୍ଦୁଝରର ପଡ଼ୋଶୀ ରାଜ୍ୟକୁ ସଞ୍ଚାରିତ ହୋଇଥିଲା । ସମ୍ପ୍ରତି ଉକ୍ତନୃତ୍ୟର ଲୋକପ୍ରିୟତା ଏବଂ ପୃଷ୍ଠପୋଷକତା ଅଭାବରୁ ଏହି ପାରଂପରିକ ଲୋକନୃତ୍ୟ ପାଇକାଳି ଲୁପ୍ତପ୍ରାୟ । ପାଇକାଳିର ଆଖଡ଼ା ଘର, ଯାହା ଦିନେ ସମର ସଂସ୍କୃତିର କେନ୍ଦ୍ରସ୍ଥଳୀ ଥିଲା, ତାହା ଏବେ ଗୋରୁମାନଙ୍କର ଆଶ୍ରୟସ୍ଥଳୀରେ ପରିଣତ ହେଲାଣି ।

ସଭ୍ୟ ମଣିଷ ଗର୍ବ କରେ, ତାର ପ୍ରାଚୀନ ସଂସ୍କୃତି ଏବଂ ପରଂପରାକୁ ନେଇ । କିନ୍ତୁ ପରିତାପର ବିଷୟ—ଜନମାନସସ୍ପୃଷ୍ଟ ଏଇ ପାଇକାଳି ନୃତ୍ୟକୁ ବଞ୍ଚାଇ ରଖିବାର କୌଣସିପ୍ରକାର ଚେଷ୍ଟା ସରକାରୀ ବା ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା କରାଯାଇନାହିଁ । ଅନୁମାନ କରାଯାଏ—ଅଳ୍ପ କେତେବର୍ଷ ମଧ୍ୟରେ ଏହି ବୀରରସପୂର୍ଣ୍ଣ ମୌଳିକ ଲୋକନୃତ୍ୟଟି କେନ୍ଦୁଝର ମାଟିରୁ ସମ୍ପୂର୍ଣ୍ଣ ଭାବେ ହଜିଯିବ । ସଂସ୍କୃତିର ଯେଉଁ ଅବକ୍ଷୟ ଚାଲିଛି, ସେହି ସ୍ରୋତରେ ଭାସିଯାଇ ଅନେକ ପ୍ରାଚୀନ କଳା ବିସ୍ମୃତି-ଗର୍ଭରେ ଲୀନ ହୋଇସାରିଛି । ଏକଥାକୁ ଏବେଠାରୁ ସ୍ମରଣ କରିବା ଆମର କର୍ତ୍ତବ୍ୟ ।

**କରମା ନୃତ୍ୟ—**

ଅନ୍ୟ ଅଞ୍ଚଳ ପରି କେନ୍ଦୁଝରରେ କରମା ପୂଜା ଓ ନୃତ୍ୟ ମଧ୍ୟ ହୋଇଥାଏ । ଏଠାରେ ଯେଉଁ କରମା ନୃତ୍ୟ ପ୍ରଦର୍ଶନ କରାଯାଏ, ତାହା ଦୁଇଭାଗରେ ବିଭକ୍ତ । ଯଥା—ପୌଷ କରମା ଓ ଭାଦ୍ର କରମା । ପୌଷ କରମା ବିଭିନ୍ନ ପୁରପଲ୍ଲୀରେ ଜାକଜମକରେ ପାଳିତ ହୁଏ । କିନ୍ତୁ କରମା ନୃତ୍ୟ କେବଳ ନିର୍ଦ୍ଦିଷ୍ଟ କେତେକ ଅଞ୍ଚଳ ଯଥା—ବାଦେଇପଶି, କେନ୍ଦୁଝରଗଡ଼ ପ୍ରଭୃତିରେ ଦେଖିବାକୁ ମିଳେ ।

**ଦଣ୍ଡନୃତ୍ୟ—**

ତେଲ୍‌କୋଇ ଅଞ୍ଚଳର ଦଣ୍ଡନୃତ୍ୟରେ ଚଢ଼େଇଆ ଓ ଚଢ଼େଇଆଣୀ ଭୂମିକାରେ ପୁରାଣ ଆଖ୍ୟାନକୁ ନେଇ ନୃତ୍ୟ କରାଯାଏ । ଏହାର ଅନ୍ୟ ଏକ ଆକର୍ଷଣ ହେଉଛି—ଠାକୁରାଣୀଙ୍କ ସମ୍ମୁଖରେ ଆଗନ୍ତୁ ଶ୍ରଦ୍ଧାଳୁ ଭକ୍ତମାନେ ବୟସ ନିର୍ବିଶେଷରେ ଧାଡ଼ିହୋଇ ଦଣ୍ଡାୟମାନ ହୋଇଥାନ୍ତି ।

ଏହି ସମସ୍ତ ଲୋକନୃତ୍ୟ ବ୍ୟତୀତ କେନ୍ଦୁଝରରେ ପାଲା ଓ ଦାଶକାଠିଆ ଭଳି ପାରଂପରିକ ନୃତ୍ୟ ଓ ସଙ୍ଗୀତ ଅତ୍ୟନ୍ତ ଲୋକପ୍ରିୟ । ଅସଂଖ୍ୟ ପାଲାଦଳ କେନ୍ଦୁଝରରେ ଏହି ପାଲାକୁ ଅଧିକ ଲୋକପ୍ରିୟ କରିବାରେ ଲାଗିଛନ୍ତି ।



# କେନ୍ଦୁଝରରେ ଶିକ୍ଷାର ବିକାଶ

ବଣ, ପାହାଡ଼ପର୍ବତର ପ୍ରାକୃତିକ ଶୋଭାରେ ପରିପୂର୍ଣ୍ଣ, କେନ୍ଦୁଝର ଏକ ଆଦିବାସୀ ବହୁଳ ଜିଲ୍ଲା । ଏଠାରେ ଆଦିବାସୀ ଓ ହରିଜନମାନଙ୍କର ସଂଖ୍ୟା ସମଗ୍ର ଜନସଂଖ୍ୟାର ପ୍ରାୟ ୫୬% ଅଟେ । ଏହି ଜିଲ୍ଲାରେ ୪୬ଟି ଶ୍ରେଣୀର ହରିଜନ ସମ୍ପ୍ରଦାୟ ଏବଂ ୨୬ଟି ଶ୍ରେଣୀର ଆଦିବାସୀ ସମ୍ପ୍ରଦାୟର ଲୋକ ବସବାସ କରନ୍ତି । ଶିକ୍ଷା ପ୍ରତି ସେମାନଙ୍କର ସହଜାତ ବିମୁଖ ମନୋଭାବ ଯୋଗୁଁ ସାମଗ୍ରିକ ଭାବରେ ଶିକ୍ଷାର ଅଭିବୃଦ୍ଧି ସମ୍ଭବ ହୋଇପାରନାହିଁ । ତଥାପି ଶିକ୍ଷାର ଅଭିବୃଦ୍ଧି ପାଇଁ ରାଜ୍ୟ ସରକାରଙ୍କର ଶିକ୍ଷା ବିଭାଗ ତଥା ହରିଜନ ଓ ଆଦିବାସୀ କଲ୍ୟାଣ ବିଭାଗ ଯୋଜନାବଦ୍ଧ ପ୍ରଚେଷ୍ଟା ଅବ୍ୟାହତ ରଖିଛି ।

ଦେଶ ସ୍ୱାଧୀନ ହେବା ସମୟରେ ଏହି ଜିଲ୍ଲାରେ ମାତ୍ର ୧୩୯ଟି ପ୍ରାଥମିକ ବିଦ୍ୟାଳୟ, ୧୧ଟି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ (ମଧ୍ୟଇଂରାଜୀ) ଓ ୨ଟି ଉଚ୍ଚ-ବିଦ୍ୟାଳୟ ରହିଥିଲା । ଯଥାକ୍ରମେ ୧୦,୬୮୦, ୧,୦୮୮ ଓ ୬୪୨ ଜଣ ଛାତ୍ରଛାତ୍ରୀ ଏଥିରେ ଅଧ୍ୟୟନ କରୁଥିଲେ ।

୧୯୬୫ ମସିହା ପୂର୍ବରୁ କେନ୍ଦୁଝର ଜିଲ୍ଲାର ଶିକ୍ଷାସମ୍ବନ୍ଧୀୟ ସମସ୍ତ କାର୍ଯ୍ୟ ମୟୂରଭଞ୍ଜ-କେନ୍ଦୁଝର ଶିକ୍ଷାମଣ୍ଡଳର ନିୟନ୍ତ୍ରଣାଧୀନ ଥିଲା । ଏହାର ସଦରମହକୁମା ବାରିପଦାଠାରେ ଅବସ୍ଥାପିତ ହୋଇଥିଲା । ଏକ ସ୍ୱତନ୍ତ୍ର ଶିକ୍ଷାମଣ୍ଡଳ ରୂପେ ଏହି ଜିଲ୍ଲା ୧୧-୮-୧୯୬୫ ମସିହାରେ ଆତ୍ମପ୍ରକାଶ କଲା ।

ଶିକ୍ଷାଗତ ପ୍ରଶାସନର ସୁବିଧା ଦୃଷ୍ଟିରୁ ପ୍ରତି ରାଜସ୍ୱ ଉପଖଣ୍ଡ, ଯଥା— ଆନନ୍ଦପୁର, କେନ୍ଦୁଝର ଓ ଚମ୍ପୁଆକୁ ଗୋଟିଏ ଲେଖା ଶିକ୍ଷାଜିଲ୍ଲା ହିସାବରେ ଗ୍ରହଣ କରାଯାଇଛି । ପ୍ରତ୍ୟେକ ଶିକ୍ଷାଜିଲ୍ଲା ଜଣେ ଶିକ୍ଷା ଜିଲ୍ଲା-ଅଧିକାରୀଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣାଧୀନ ହୋଇ ରହିଅଛି । ଜିଲ୍ଲାର ସମୁଦାୟ ୧୩ ଗୋଟି ବ୍ଲକ୍ ପାଇଁ ୪୪ ଜଣ

ଉପଶିକ୍ଷା ପରିଦର୍ଶକ ପ୍ରାଥମିକ ଶିକ୍ଷାର ସର୍ବାଙ୍ଗୀଣ ବିକାଶ ପାଇଁ କ୍ଷେତ୍ରାଧିକାରୀ ରୂପେ ନିଯୁକ୍ତି ପାଇଛନ୍ତି ।

ଜିଲ୍ଲାରେ ମୌଳିକ ଶିକ୍ଷାଦାନର ବ୍ୟବସ୍ଥା ହୋଇପାରିନଥିବା ଅଞ୍ଚଳର ବାଳକ, ବାଳିକାମାନଙ୍କର ଶିକ୍ଷାଲାଭର ସୁଯୋଗ ସକାଶେ ଅଣଆନୁଷ୍ଠାନିକ ବ୍ୟବସ୍ଥା ପ୍ରଚଳନ କରାଯାଇଅଛି । ତଦନୁଯାୟୀ ଜିଲ୍ଲାରେ ଜଣେ ସଂଯୋଜକ ତଥା ୭ ଜଣ କନିଷ୍ଠ ସଂଯୋଜକ, ୭ଟି ଅଣ-ଆନୁଷ୍ଠାନିକ ପ୍ରକଳ୍ପରେ କ୍ଷେତ୍ରାଧିକାରୀ ରୂପେ ଅବସ୍ଥାପିତ ହୋଇଅଛନ୍ତି । ଏତଦ୍‌ବ୍ୟତୀତ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକଦ୍ୱାରା ଛଅଟି ବ୍ଲକ୍‌ର ୩୫୦ଟି ଅଣଆନୁଷ୍ଠାନିକ ଶିକ୍ଷାକେନ୍ଦ୍ର ଚାଲୁଅଛି ।

## ସ୍ୱଳ୍ପ ବ୍ୟୟସମ୍ବଳିତ ଛାତ୍ରାବାସ (Low-cost Hostel) :

ଦାରିଦ୍ର୍ୟ, ଅଜ୍ଞତା ଓ ଶିକ୍ଷାପ୍ରତି ବିମୁଖ ମନୋଭାବ ହେତୁ ଦର୍ଶ ମଝିରୁ ପାଠ-ପଢ଼ା ଛାଡ଼ି ଚାଲିଯାଉଥିବା ଛାତ୍ର,ଛାତ୍ରୀମାନଙ୍କର ସଂଖ୍ୟା ହ୍ରାସ ନିମନ୍ତେ ଜିଲ୍ଲାର ଆଦିବାସୀ/ହରିଜନବହୁଳ ଗ୍ରାମପଞ୍ଚାୟତ କେନ୍ଦ୍ର ଓ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ସ୍ୱଳ୍ପବ୍ୟୟସମ୍ବଳିତ ଛାତ୍ରାବାସମାନ ସରକାରଙ୍କ ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ତରଫରୁ ନିର୍ମାଣ କରାଯାଇଛି । ପ୍ରତି ଛାତ୍ରାବାସରେ ୪୦ ଜଣ ଲେଖାଏଁ ଆଦିବାସୀ, ହରିଜନ ଶ୍ରେଣୀର ଛାତ୍ର, ଛାତ୍ରୀଙ୍କର ନିଃଶୁଳ୍କ ରହଣି, ଖାଦ୍ୟ, ପୋଷାକପତ୍ର, ଲିଖନ ଓ ପଠନ ସାମଗ୍ରୀର ଯୋଗାଣ ତଥା ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷାର ବ୍ୟବସ୍ଥା ଜିଲ୍ଲାର ଆଦିବାସୀ ଓ ହରିଜନ କଲ୍ୟାଣ ବିଭାଗ ପକ୍ଷରୁ କରାଯାଉଛି ।

## କଳାପଟା ଅଭିଯାନ (Operation Bliack-board) :

କେନ୍ଦ୍ର ସରକାରଙ୍କ ୧୯୮୬ ମସିହା ନୂତନ ଶିକ୍ଷାନୀତି ଅନୁଯାୟୀ ସମଗ୍ର ଦେଶରେ ପର୍ଯ୍ୟାୟକ୍ରମେ କଳାପଟା ଅଭିଯାନ ଯୋଜନା ପ୍ରଚଳନ କରାଯାଇଛି । ତଦନୁଯାୟୀ ପ୍ରତି ପ୍ରାଥମିକ ବିଦ୍ୟାଳୟକୁ କେତେକ ସର୍ବନିମ୍ନ ସୁଯୋଗ ଯୋଗାଇ ଦିଆଯାଉଅଛି । ଯଥା—

୧ । ଅନ୍ୟୂନ ୨ଟି କୋଠରିବିଶିଷ୍ଟ ପକ୍କା ଗୃହ ।

୨ । ଅନ୍ୟୂନ ଜଣେ ଶିକ୍ଷୟିତ୍ରୀଙ୍କ ନିଯୁକ୍ତି ବ୍ୟବସ୍ଥା ।

୩ । ପାଠ୍ୟଦାନ ସହାୟକ ପୁସ୍ତିକା, ଲିଖନ ଓ ପଠନୋପକରଣ ଯୋଗାଣ ।

୧୯୯୦ ମସିହା ଶେଷସୁଦ୍ଧା ଜିଲ୍ଲାର ସମସ୍ତ ପ୍ରାଥମିକ ବିଦ୍ୟାଳୟରେ ଏହି ଯୋଜନା କାର୍ଯ୍ୟକାରୀ ହୋଇସାରିବ ।

## ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ—

କେନ୍ଦ୍ରସରକାର ସମଗ୍ର ଦେଶର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ମାଗଣା ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ପ୍ରଚଳନ କରାଇଛନ୍ତି । ତଦନୁଯାୟୀ ଜିଲ୍ଲାରେ ଗତ ୧୯୯୫ ମସିହା ଜୁଲାଇ ପହିଲା ତାରିଖରୁ ୧୭୭୫ଟି ବିଦ୍ୟାଳୟରେ ଏହି ଯୋଜନା କାର୍ଯ୍ୟକାରୀ ହେଲାଣି । ଏହି କାର୍ଯ୍ୟକ୍ରମ ପ୍ରଚଳନ ପୂର୍ବରୁ ଜିଲ୍ଲାରେ ପ୍ରାଥମିକ ପର୍ଯ୍ୟାୟରେ ୧, ୮୨, ୭୩୩ ଜଣ ଛାତ୍ରଛାତ୍ରୀ ଅଧ୍ୟୟନ କରୁଥିଲେ ଏବଂ କାର୍ଯ୍ୟକାରୀ ହେବା ପରେ ଏହା ବୃଦ୍ଧି ପାଇ ୨, ୦୧, ୧୧୩ ହୋଇଅଛି । ଏହି ବୃଦ୍ଧି ହାର ୧୯୯୫-୯୬ ଶିକ୍ଷା ବର୍ଷରେ ୧୦. ୨୪% ଅଟେ ।

## ସମସ୍ତଙ୍କ ପାଇଁ ଶିକ୍ଷା-ପ୍ରକଳ୍ପ—

ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବାରେ ଗ୍ରାମ ଶିକ୍ଷା କମିଟିର ଭୂମିକା ଓ ଗୁରୁତ୍ୱକୁ ସଗଠିତ ଓ ସୁଦୃଢ଼ କରିବା ପାଇଁ ଭୁବନେଶ୍ୱରସ୍ଥ ଜ୍ୟାଭିୟର ଇନ୍‌ଷ୍ଟିଚ୍ୟୁଟ୍ ଅଫ ମ୍ୟାନେଜ୍‌ମେଣ୍ଟ ଓ କେନ୍ଦୁଝରର ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ମିଳିତ ସାହାଯ୍ୟ ତରଫରୁ ଏହି ପ୍ରକଳ୍ପ ୧୯୯୪ ମସିହାରୁ କାର୍ଯ୍ୟକାରୀ ହେଉଛି । ଗ୍ରାମ ଶିକ୍ଷା କମିଟିଗୁଡ଼ିକର ରଚନାତ୍ମକ ସଙ୍ଗଠନ ବିଦ୍ୟାଳୟକୁ ପରିଚାଳନା କ୍ଷେତ୍ରରେ ସେହି କମିଟିର ସଦସ୍ୟମାନଙ୍କ ଆବଶ୍ୟକ ଓ ନିଶ୍ଚିତ ସହଯୋଗ ବୃଦ୍ଧି ନିମିତ୍ତ ସେମାନଙ୍କୁ ଆବଶ୍ୟକୀୟ ତାଲିମ୍ ଓ ସହଯୋଗ ଏହି ପ୍ରକଳ୍ପ ମାଧ୍ୟମରେ ଯୋଗାଇ ଦିଆଯାଉଛି । ସାରା ଜିଲ୍ଲାରେ ପ୍ରଚଳିତ ଏହି କାର୍ଯ୍ୟକ୍ରମ ଦୁର୍ବଳ ଗ୍ରାମଶିକ୍ଷା କମିଟିଗୁଡ଼ିକ ସକ୍ରିୟ କରିବା ସହ ଅଗମ୍ୟ ଅଞ୍ଚଳର ପିଲାମାନଙ୍କୁ ସ୍କୁଲକୁ ଆଣିବାରେ ସଫଳତା ହାସଲ କରିଛି । ଏହି ପ୍ରକଳ୍ପର କାର୍ଯ୍ୟକାରେଣୀ ଅନୁଷ୍ଠାନ ତଥା ସେମାନେ ଦାୟିତ୍ୱ ନେଇଥିବା ଗ୍ରାମପଞ୍ଚାୟତଗୁଡ଼ିକ ଅନ୍ୟତ୍ର ପ୍ରକାଶ ପାଇଛି ।

ଏକ ସ୍ୱତନ୍ତ୍ର ଶିକ୍ଷାମଣ୍ଡଳ ରୂପେ କେନ୍ଦୁଝର ଜିଲ୍ଲା ଆତ୍ମପ୍ରକାଶ କରିବା ପରେ ଜିଲ୍ଲାରେ ଶିକ୍ଷାକ୍ଷେତ୍ରରେ ତତ୍କାଳୀନ ସ୍ଥିତି ତଥା ସାମ୍ପ୍ରତିକ ସମୟରେ ଘଟିଥିବା ଅଭିବୃଦ୍ଧିର ଏକ ତୁଳନାତ୍ମକ ଚିତ୍ର ପ୍ରଦତ୍ତ ହେଉଛି ।

| କ୍ରମାଙ୍କ | ବିବରଣୀ | ଏକକ | ସ୍ଥିତି | |
|---|---|---|---|---|
| | | | ୧୯୭୫-୭୬. | ୧୯୯୫-୯୬. |
| ୧ । | ଶିକ୍ଷାନୁଷ୍ଠାନ | | ସଂଖ୍ୟା | |
| | (କ) ପ୍ରାଥମିକ ବିଦ୍ୟାଳୟ — | --- | ୧୩୫୦ | ୧୫୯୪ |
| | (ଖ) ଉଚ୍ଚ ପ୍ରାଥମିକ (ଏମ୍. ଇ.) ବିଦ୍ୟାଳୟ | — | ୩୦୨ | ୬୫୯ |

| | | | |
|---|---|---|---|
| (ଗ) ଉଚ୍ଚ ବିଦ୍ୟାଳୟ | — | ୧୦୦ | ୪୫୦ |
| (ଘ) ଉଚ୍ଚତର ମାଧ୍ୟମିକ (ଧନ୍ଦାମୂଳକ) ବିଦ୍ୟାଳୟ | | — | ୮ |
| (ଙ) ସଂସ୍କୃତ ଟୋଲ୍ | — | ୧ | ୧ |
| (ଚ) ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନ ସି. ଟି. ସ୍କୁଲ | | ୩ | ୩ |
| ବି. ଇଡ୍. କଲେଜ | — | — | ୧ |
| (ଛ) ଅଣ-ଆନୁଷ୍ଠାନିକ ଶିକ୍ଷାକେନ୍ଦ୍ର | — | — | ୭୨୩ |

୨ । ଛାତ୍ରଛାତ୍ରୀ ସଂଖ୍ୟା — ହଜାରରେ

| | | | |
|---|---|---|---|
| (କ) ପ୍ରାଥମିକ ପର୍ଯ୍ୟାୟ (ପ୍ରଥମରୁ ପଞ୍ଚମ) | — | ୧୦୧ | ୨୦୦ |
| (ଖ) ଉଚ୍ଚପ୍ରାଥମିକ ପର୍ଯ୍ୟାୟ (ଷଷ୍ଠରୁ ସପ୍ତମ) | — | ୧୩ | ୩୯ |
| (ଗ) ମାଧ୍ୟମିକ ପର୍ଯ୍ୟାୟ (ଅଷ୍ଟମରୁ ଦଶମ) | — | ୧୦ | ୪୪ |

୩ । ଶିକ୍ଷକ — ସଂଖ୍ୟା

| | | | |
|---|---|---|---|
| (କ) ପ୍ରାଥମିକ | — | ୩୨୩୯ | ୩୮୩୪ |
| (ଖ) ଉଚ୍ଚ ପ୍ରାଥମିକ | — | ୧୧୫୪ | ୨୦୦୬ |
| (ଗ) ମାଧ୍ୟମିକ | — | ୬୭୫ | ୩୧୦୩ |
| (ଘ) ଉଚ୍ଚତର ମାଧ୍ୟମିକ | — | — | |
| (ଙ) ଅଣ-ଆନୁଷ୍ଠାନିକ ଶିକ୍ଷା ସହାୟକ | | — | ୭୧୯ |

୪ । **ମାଧ୍ୟମିକ ପରୀକ୍ଷାଫଳ** (୧୯୯୫-୯୬)

| | | | |
|---|---|---|---|
| (କ) ପରୀକ୍ଷା ଦେଇଥିବା ଛାତ୍ରଛାତ୍ରୀ ସଂଖ୍ୟା | — | — | ୧୪,୨୮୭ |
| (ଖ) ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀ ସଂଖ୍ୟା | — | — | ୫,୭୬୮ |
| (ଗ) ସଫଳତା ହାର ପ୍ରତିଶତରେ | — | — | ୪୦.୩୭% |

ଉଲ୍ଲେଖଯୋଗ୍ୟ ଯେ ୧୯୭୫ ମସିହା ମାଧ୍ୟମିକ ପରୀକ୍ଷା ଠାରୁ ୧୯୯୭ ମସିହା ମାଧ୍ୟମିକ ପରୀକ୍ଷା ପର୍ଯ୍ୟନ୍ତ ଏହି ଜିଲ୍ଲାର ମୋଟ ୨୭ ଜଣ ଛାତ୍ର ଉଚ୍ଚସ୍ଥାନ ସାଫଲ୍ୟ ଅର୍ଜନ କରି ଶିକ୍ଷାବିଭାଗର ତଥା ସମଗ୍ର ଜିଲ୍ଲାର ଗୌରବ ବୃଦ୍ଧିରେ ସହାୟକ ହୋଇଅଛନ୍ତି ।

**କେନ୍ଦୁଝର ଜିଲ୍ଲାରେ ସଂସ୍କୃତ ଶିକ୍ଷା—**

ବଳଭଦ୍ର ନାରାୟଣ ସଂସ୍କୃତ ଟୋଲ୍—ଝୁମ୍ପୁରା, (ଆନନ୍ଦପୁର)

(ଏହି ସୂଚନା ଶିକ୍ଷାମଣ୍ଡଳାଧୀଶଙ୍କ ସୌଜନ୍ୟରୁ ପ୍ରାପ୍ତ)

# ଆଦିବାସୀ କଲ୍ୟାଣ ବିଭାଗର ଆବାସିକ ବିଦ୍ୟାଳୟ

## ବାଳିକା ଉଚ୍ଚ ବିଦ୍ୟାଳୟ

| | | |
|---|---|---|
| (୧) ବାସୁଦେବପୁର | (୨) ନଶାଗଡ଼ିଆ | (୩) ଶୁଆକାଟି |
| (୪) ତଲଦା | (୫) ଘଏଡ଼ହା | |

## ବାଳକ ଉଚ୍ଚ ବିଦ୍ୟାଳୟ

| | | |
|---|---|---|
| (୧) ହରିଚନ୍ଦନପୁର | (୨) ଭଗାମୁଣ୍ଡା | (୩) ବକ୍ସି ବାରଗାଁ |
| (୪) ନରଣପୁର | (୫) ଶୁଆକାଟି | (୬) ଜଡ଼ପଦା |
| (୭) ଜଗନ୍ନାଥପୁର | (୮) ମାଟକାମବେଡ଼ା | (୯) ଘଇସୁଆ |
| (୧୦) କାଦକଲା | (୧୧) ବସନ୍ତପୁର | (୧୨) ଗୋନାସିକା |

## ଆଶ୍ରମ ଓ କନ୍ୟାଶ୍ରମ (୭ମ ପର୍ଯ୍ୟନ୍ତ)

| | | |
|---|---|---|
| ମୁରୁସୁଆଁ | ଚେଲି ଅର୍ଣ୍ଣଲା | ଘମଲ |
| କାଞ୍ଚିପାଣି (ବାଳକ) | ଜଗନ୍ନାଥ ପୁର | ଜଗମୋହନପୁର |
| ଜଡ଼ିଘ | କୋଡ଼ପଶା | ଦେହୁରପଣି |
| ଖଜୁରବାଣୀ | ସାଇଁକୂଲ | ଓଡ୍ରସୁଘ |
| କାଞ୍ଚିପାଣି (ବାଳିକା) | | |

## ଆବାସିକ ସେବାଶ୍ରମ (୫ମ ପର୍ଯ୍ୟନ୍ତ)

| | | |
|---|---|---|
| ବେଣାମୁଣ୍ଡା | ସାହାରପୁର | ଚମ୍ପେଇ |
| ଝୁମ୍ପାପଡ଼ା | ନରଦା | ବଳା |
| ଜାଲି | ଗୁଆଲି | ଭଗାମୁଣ୍ଡା |
| କନ୍ଦ୍ରେଇଗୁଳା | ଘଏଗୁଡ଼ା | କୋଲମାଟି |



# କେନ୍ଦୁଝରର ସାହିତ୍ୟ ଅନୁଷ୍ଠାନ

୧ । ବଳଭଦ୍ର ସାହିତ୍ୟ ସଂସଦ—କେନ୍ଦୁଝର ଗଡ଼ (ସ୍ୱାଧୀନତା ପୂର୍ବରୁ)

୨ । କେନ୍ଦୁଝର ସାହିତ୍ୟ ସଂସଦ— କେନ୍ଦୁଝର (୧୯୬୨)

୩ । ଯୁବ ସାହିତ୍ୟ ସଂସଦ— କେନ୍ଦୁଝର (୧୯୬୯)

(୨ ଓ ୩) ଏହି ଦୁଇଟି ସଂସଦ ମିଳିତ ହୋଇ ମିଳନୀର ସୃଷ୍ଟି ।

୪ । ମିଳନୀ ସାହିତ୍ୟ ସଂସଦ—କେନ୍ଦୁଝର (୧୯୭୧)

୫ । ସବୁଜିମା ସାହିତ୍ୟ ସଂସଦ—ଘସିପୁର

୬ । ବଇଳା ସାହିତ୍ୟ ସଂସଦ—ଆନନ୍ଦପୁର

୭ । ପ୍ରତିଧ୍ୱନୀ ସାହିତ୍ୟ ସଂସଦ—କେଶବୁରୀପାଳ

୮ । ଉପାନ୍ତ ସାହିତ୍ୟ ସଂସଦ—କରବୁରୁ

୯ । ପ୍ରତିଶ୍ରୁତି ସାହିତ୍ୟ ସଂସଦ—ଚମ୍ପୁଆ

୧୦ । ସାଂସ୍କୃତିକ ସାହିତ୍ୟ ସଂସଦ—କେନ୍ଦୁଝର

୧୧ । ସଂଯୋଗୀ ସାହିତ୍ୟ ସଂସଦ—ଘଟଗାଁ (କୁଣ୍ଡାପିଠା)

୧୨ । ସୃଜନୀ ସାହିତ୍ୟ ସଂସଦ—ତେଲକୋଇ

୧୩ । ଶୁଭଶ୍ରୀ ସାହିତ୍ୟ ସଂସଦ—ତୁରୁମୁଙ୍ଗା

୧୪ । ସନ୍ଥେଇଭଞ୍ଜ ସାହିତ୍ୟ ସଂସଦ—ପଳାଶପଙ୍ଗା

୧୫ । ଫୁଲଚନ୍ଦନ ପ୍ରକାଶନୀ—କେନ୍ଦୁଝର

୧୬ । କାକଳି ପ୍ରକାଶନୀ—କେନ୍ଦୁଝର

୧୭ । ଜୀବନ ସାହିତ୍ୟ ମଞ୍ଚ—କେନ୍ଦୁଝର

୧୮ । ତାରଣୀ ସାହିତ୍ୟ ସଂସଦ—ଘଟଗାଁ

୧୯ । କେନ୍ଦୁଝର ସାହିତ୍ୟ ସଂସ୍କୃତି ପରିଷଦ—କେନ୍ଦୁଝର

୨୦ । ଶାଳିନୀ ପ୍ରକାଶନୀ—କେନ୍ଦୁଝର

୨୧ । କଳ୍ପମୃଗାସ୍ଥ ଶିଶୁସାହିତ୍ୟ ସଂସଦ—କେନ୍ଦୁଝର
୨୨ । ଅରୁଣ ତରୁଣ—କେନ୍ଦୁଝର
୨୩ । ଭୁବନେଶ୍ୱର ସାହିତ୍ୟ ସଂସଦ—ଦେଓଗାଁ
୨୪ । ସିଂହନାଦ ପ୍ରକାଶନୀ—ଶାଳପଡ଼ା
୨୫ । ରଥୀ ସାରଥି ପ୍ରକାଶନୀ—ଶାଳପଡ଼ା
୨୬ । ଯୁବକଳା ପରିଷଦ—ତେଲକୋଇ
୨୭ । କାଳିଦାସ ସାହିତ୍ୟ ସଂସଦ—କେନ୍ଦୁଝର
୨୮ । ସମ୍ଭାବନା ସାହିତ୍ୟ ସଂସଦ—ସାଇଁକୁଳ
୨୯ । ସୂର୍ଯ୍ୟସ୍ନାତା ସାହିତ୍ୟ ସଂସଦ—ଶୁଆକାଟି
୩୦ । ସଞ୍ଜୀବନୀ ସାହିତ୍ୟ ସଂସଦ—ଭଣ୍ଡା
୩୧ । ପାରିଜାତ ସାଂସ୍କୃତିକ ସଂଘ—ହଛବାଲି
୩୨ । ସତ୍ୟମ୍ ସାହିତ୍ୟ ସଂସଦ—ଯୋଡ଼ା
୩୩ । ଚିନ୍ତା ଓ ଚେତନା (କେନ୍ଦୁଝର ଶାଖା)—କେନ୍ଦୁଝର
୩୪ । ସମନ୍ୱୟ ସାହିତ୍ୟ ସଂସଦ—ଚମ୍ପୁଆ
୩୫ । ପଲ୍ଲୀଶ୍ରୀ ସାହିତ୍ୟ ସଂସଦ—ବାଲିବନ୍ଧ



# କେନ୍ଦୁଝରରୁ ପ୍ରକାଶିତ ପତ୍ରପତ୍ରିକା—ସମ୍ପାଦକ

| ନାମ | ସ୍ଥାନ | ସମ୍ପାଦକ |
| --- | --- | --- |
| ୧ । ବୈତରଣୀ | କେନ୍ଦୁଝର | ଶ୍ରୀ ବଂଶୀଧର ମିଶ୍ର |
| ୨ । ଖବର ଟବର | ,, | ଶ୍ରୀ ନୃସିଂହନାଥ ସିଂହ |
| ୩ । କେନ୍ଦୁଝର ଟାଇମ୍‌ସ | ,, | ଶ୍ରୀ ରଜତ କୁମାର ନାୟକ |
| ୪ । ବଲୁଆ ବସ୍ତ୍ର | ବଡ଼ବିଲ | ଶ୍ରୀ ବିପିନ ବିହାରୀ ଦାସ |
| ୫ । କେନ୍ଦୁଝର କଥା | ଷଡ଼ଙ୍ଗ | ଶ୍ରୀ ଶ୍ରୀନିବାସ ଖଣ୍ଡେଇ |
| ୬ । ଦୃଷ୍ଟି | କେନ୍ଦୁଝର | କେନ୍ଦୁଝର ସାକ୍ଷରତା ସମିତି |
| ୭ । କେ୍ୟାଝ | ,, | ସ୍ୱେଚ୍ଛାସେବୀ ସାମ୍ମୁଖ୍ୟ |
| ୮ । ଆଦିବାସୀ | ,, | ଶ୍ରୀ ସେବୁ ଭୌମିକ |
| ୯ । ବାର୍ତ୍ତାଝର | ,, | ଶ୍ରୀ ସଦାନନ୍ଦ ବେକ୍ |
| ୧୦ । ମିଳନୀ ବନବାଣୀ | କେନ୍ଦୁଝର | ମିଳନୀ ସାହିତ୍ୟ ସଂସଦ |
| ୧୧ । ଶାଳନ୍ଦୀ | ,, | ଶ୍ରୀ ନିରଞ୍ଜନ ନାୟକ |
| ୧୨ । କେ୍ୟାଝପ୍ରଭା | ,, | ଶ୍ରୀ ପ୍ରାଣବଲ୍ଲଭ ନାୟକ |
| ୧୩ । କାକଳି | ମଣ୍ଡୁଆ | ଶ୍ରୀ ଦେବାଶିଷ ଚକ୍ରବର୍ତ୍ତୀ |
| ୧୪ । ଯୁଗଯାତ୍ରୀ | କେନ୍ଦୁଝର | ସ୍ୱର୍ଣ୍ଣପ୍ରଭା ପାଠାଗାର ମୁଖପତ୍ର |
| ୧୫ । ଅନ୍ତରଙ୍ଗ | କେନ୍ଦୁଝର | ଡାକବିଭାଗ ଅବସର ବିନୋଦନ କେନ୍ଦ୍ରର ମୁଖପତ୍ର |
| ୧୬ । ସାହିତ୍ୟ ଆକାଶରେ ମାନଚନ୍ଦ୍ର | ଓଗ୍ଲ | ଶ୍ରୀ ନୃସିଂହନାଥ ସିଂହ |
| ୧୭ । ରସଛନ୍ଦା | କେନ୍ଦୁଝର | ଶ୍ରୀ ବସନ୍ତ ମଲ୍ଲିକ |
| ୧୮ । ରଥୀ ସାରଥୀ | ଶାଳପଡ଼ା | ଶ୍ରୀ ଯଦୁନାଥ ଜେନା |

| | | |
|---|---|---|
| ୧୯ । ସିଂହନାଦ | ଶାଳପଡ଼ା | ଶ୍ରୀ ଶ୍ରୀକାନ୍ତ ଦାଶ |
| ୨୦ । ସନ୍ଧେଭଞ୍ଜ | ପଳାଶପଙ୍ଗା | ଶ୍ରୀ ବେଣୁଧର ସାହୁ |
| ୨୧ । ମେଘଶୈଳ | ମେଘାହାତବୁରୁ (କିରିବୁରୁ ହିଲଟପ୍) | ଶ୍ରୀ ଚିନ୍ତାମଣି ମହାଲିକ |
| ୨୨ । ତାଳଧ୍ୱଜ | କେନ୍ଦୁଝର | ଶ୍ରୀ ତୁଷାରକାନ୍ତ ପଣ୍ଡା |
| ୨୩ । ଫୁଲ୍ଲ | କେନ୍ଦୁଝର | ଶ୍ରୀ ନୃସିଂହ ପ୍ରସାଦ ମହାନ୍ତ |
| ୨୪ । ସ୍ୱର୍ଣ୍ଣରେଣୁ | ତେଲକୋଇ | ଡଃ. ବନଜ କୁମାର ବଶ୍ୱାଳ |
| ୨୫ । ଚିନ୍ମୟୀ | ଘସିପୁରା | ଶ୍ରୀ ପ୍ରଫୁଲ୍ଲ ଚନ୍ଦ |
| ୨୬ । ପିନାକୀ | କେନ୍ଦୁଝର | ଶ୍ରୀ ଧ୍ରୁବଚରଣ ରଣା |
| ୨୭ । ବଉଳା | ହାଟଡିହି | ଶ୍ରୀ ଶୁକଦେବ ମଲ୍ଲିକ |
| ୨୮ । ଗୌରବ | କେନ୍ଦୁଝର | ଶ୍ରୀ ଉମେଶ ଚନ୍ଦ୍ର ସାହୁ |
| ୨୯ । ଫୁଲଚନ୍ଦନ | କେନ୍ଦୁଝର | ଶ୍ରୀ ନୃସିଂହ ପ୍ରସାଦ ମହାନ୍ତ |
| ୩୦ । ଭୀରଭଲ | କେଶଦୁରାପାଳ | ଶ୍ରୀ ମଙ୍ଗୁଳୁ ଚରଣ ପୃଷ୍ଟି |
| ୩୧ । ଶିଶୁ ବିକାଶ | କେନ୍ଦୁଝର | ଶ୍ରୀ ପ୍ରାଣବଲ୍ଲଭ ନାୟକ |
| ୩୨ । ଯୁବା ଚେତନା | କେନ୍ଦୁଝର | ଶ୍ରୀ ଶରତ ଚନ୍ଦ୍ର ଜେନା |
| ୩୩ । ବନ୍ଧୁ | ମାଟ୍‌କାମବେଡ଼ା | ଶ୍ରୀ ଗୁପେଶ୍ୱର ମହାନ୍ତ |
| ୩୪ । ଓଡ଼ିଆ ପୁଅ | କେନ୍ଦୁଝର | ଶ୍ରୀ ମନୋଜ କୁମାର ଦାଶ |
| ୩୫ । ନବକାକଳି | ହଦଗଡ଼ | ଡଃ ସୁରେନ୍ଦ୍ର ନାଥ ତ୍ରିପାଠୀ |
| ୩୬ । ଢାଙ୍କିଚମାଳି | କେନ୍ଦୁଝର | ଶ୍ରୀ କରୁଣାକର ବାରିକ |
| ୩୭ । କାଉଁରିବୃନ୍ଦ | କେନ୍ଦୁଝର | ଶ୍ରୀ ଅର୍ଜୁନ ପ୍ରସାଦ ନନ୍ଦ |

ବିଶେଷ ସୂଚନା : ସଂପ୍ରତି ଅନିୟମିତ ଭାବେ ଅଳ୍ପ କେତୋଟି ପତ୍ରପତ୍ରିକା ପ୍ରକାଶ ପାଉଛି । ଅଧିକାଂଶ ପତ୍ରିକା ବନ୍ଦ ହୋଇଗଲାଣି ।



# କେନ୍ଦୁଝରରେ ଅନାଥ ସେବା

**ମନୋଜମଞ୍ଜରୀ ଶିଶୁଭବନ—**

୧୯୬୩ ମସିହାରେ କେନ୍ଦୁଝରଠାରେ ପ୍ରତିଷ୍ଠାଲାଭ କରିଥିବା ଶିଶୁ ଭବନରେ ଅସହାୟ ଅନାଥ ଶିଶୁମାନଙ୍କୁ ସେବାଯତ୍ନ କରି ମଣିଷ କରାଯାଉଛି । ଶିକ୍ଷା, ସ୍ୱାସ୍ଥ୍ୟ, ମନୋରଞ୍ଜନ ତଥା କୁଟୀର ଶିଳ୍ପ ପ୍ରତି ଏଠାରେ ଯତ୍ନ ନିଆଯାଏ । ପୋଷ୍ୟପୁତ୍ର ଓ ପୋଷ୍ୟକନ୍ୟା ପାଇଁ ଦେଶବିଦେଶରୁ ଅନେକ ଧର୍ମବ୍ୟକ୍ତି ଏଠାରୁ ଶିଶୁମାନଙ୍କୁ ଗ୍ରହଣ କରିଥାନ୍ତି । ସମ୍ପ୍ରତି ଏହା ସରକାରଙ୍କ ଦ୍ୱାରା ପରୋକ୍ଷ ଭାବେ ପରିଚାଳିତ । ଏହି ଅନୁଷ୍ଠାନର ପ୍ରତିଷ୍ଠାତା—ଶ୍ରୀ ନରେନ୍ଦ୍ର ମହାପାତ୍ର ।

**ମୂକ ଓ ବଧିର ବିଦ୍ୟାଳୟ—**

କେନ୍ଦୁଝରର ସିଦ୍ଧମଠଠାରେ ପ୍ରତିଷ୍ଠିତ ମୂକ ଓ ବଧିର ବିଦ୍ୟାଳୟ ମନୋଜମଞ୍ଜରୀ ଶିଶୁଭବନ ଦ୍ୱାରା ପରିଚାଳିତ । ଏଠାରେ ଶିକ୍ଷାଦାନ ସହିତ କୃଷି ତାଲିମ ମଧ୍ୟ ଦିଆଯାଏ ।

**ଯୋମଗିରି—**

ଜଙ୍ଗଲି ଅଞ୍ଚଳରେ ଅତି ପୁରାତନ ତଥା ଅବହେଳିତ ଜୁଆଙ୍ଗ ସମ୍ପ୍ରଦାୟର ଉନ୍ନତିକଳ୍ପେ ଯୋମଗିରିଠାରେ ଏକ ସୁନ୍ଦର ସ୍ୱାସ୍ଥ୍ୟକେନ୍ଦ୍ର ଓ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି । ମନୋଜମଞ୍ଜରୀ ଶିଶୁଭବନ ଦ୍ୱାରା ଏହା ପରିଚାଳିତ । ଏଥିରେ ଶତାଧିକ ଛାତ୍ର ଶିକ୍ଷାଲାଭ କରୁଛନ୍ତି ଓ ମାଗଣାରେ ସ୍ୱାସ୍ଥ୍ୟ ସେବା ପାଉଛନ୍ତି ।

**ଜରାନିବାସ, ବନାଯୋଡ଼—**

ପଦ୍ମପୁର ନିକଟସ୍ଥ ବନାଯୋଡ଼ ଗ୍ରାମରେ ଆଇଡିଆଲ ଡେଭଲପ୍‌ମେଣ୍ଟ ଏଜେନ୍‌ସି ନାମକ ଜରାନିବାସ କେତେଜଣ ଅସହାୟ ବୃଦ୍ଧ ବୃଦ୍ଧାଙ୍କୁ ନେଇ ପ୍ରତିଷ୍ଠିତ

ହୋଇଛି । ଏହା ଏକ ଜନମଙ୍ଗଳଙ୍କିଷ୍ଟୁ ଅନୁଷ୍ଠାନ । ଏହାକୁ ପରିଚାଳନା କରୁଛନ୍ତି ଜଣେ ସମାଜସେବୀ—କୁମାରୀ ସେବନ୍ତୀ ସିଂହ ।

## ଆଦିବାସୀ ବିକାଶ ସମିତି, ଉଖୁଣ୍ଡା—

ସମାଜସେବୀ କୁମାରୀ ତୁଳସୀ ମୁଣ୍ଡାଙ୍କ ଦ୍ୱାରା ପ୍ରତିଷ୍ଠା ଲାଭ କରିଥିବା ଦୁଇଟି ଆଶ୍ରମ ମଧ୍ୟରେ ମୁଖ୍ୟ ଆଶ୍ରମଟି ଯୋଡ଼ା, ବଡ଼ବିଲ ଅଞ୍ଚଳର ସେରେଣ୍ଡା ଠାରେ ଅବସ୍ଥିତ । ଅନ୍ୟଟି ତୁଳସୀ ମୁଣ୍ଡାଙ୍କ ଗାଁ'ର ଉଖୁଣ୍ଡା ପଞ୍ଚାୟତର କାଇଁଶି ଠାରେ ଅବସ୍ଥିତ । ସେଠାରେ ଆଦିବାସୀ, ଅସହାୟ ମହିଳା, ଶିଶୁ ଏବଂ ବୃଦ୍ଧ-ବୃଦ୍ଧାଙ୍କ ଆଶ୍ରୟ ମିଳେ । ଯଥାସମ୍ଭବ ସେବାସମିତି ନାମକ ସଂସ୍ଥା ଗଠନ କରି କୁମାରୀ ତୁଳସୀ ମୁଣ୍ଡା ଏହି ଅଭିନବ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି ।

## ମାନସିକ ନ୍ୟୁନତା ଶିକ୍ଷାସଂସ୍ଥା କଟେନ୍ତା—

ଧକୋଠା ଯୁବକ ସଂଘ ଦ୍ୱାରା ପରିଚାଳିତ ଏହି ଶିକ୍ଷାକେନ୍ଦ୍ରରେ ମାନସିକ ସ୍ତରରେ ଯେଉଁମାନେ ଦୁର୍ବଳ, ସେହିଭଳି ୩୦ ଜଣ ପିଲାଙ୍କୁ ଏଠାରେ ଶିକ୍ଷାଦାନ ତଥା ଧନ୍ଦାମୂଳକ ଶିକ୍ଷା ପ୍ରଦାନ କରାଯାଉଛି । ଏଥିରେ ୩ ଜଣ ତାଲିମ-ପ୍ରାପ୍ତ ଶିକ୍ଷକ ନିଯୁକ୍ତ ଅଛନ୍ତି । ଏହି ସଂଘ ଦ୍ୱାରା ଅସହାୟ ମହିଳାମାନଙ୍କ ଉଦ୍ଦେଶ୍ୟରେ ଏକ ସ୍ୱଳ୍ପ ରହଣି ଆବାସ ମଧ୍ୟ ପରିଚାଳିତ ହେଉଛି ।

## ବସ୍ତୁପ୍ରିୟା ବାଳାଶ୍ରମ—ମଠ, ଚେଟନାପଦ—

ଏହି ଅନାଥ ଆଶ୍ରମଟି ୧୯୮୮ ମସିହାରୁ ପ୍ରତିଷ୍ଠାଲାଭ କରିଛି । ଏହାକୁ ଶ୍ରୀ ପ୍ରେମାନନ୍ଦ ଦାସ ତାଙ୍କ ମାଆଙ୍କ ନାମରେ ନାମିତ କରି ପରିଚାଳନା କରୁଛନ୍ତି । ପ୍ରାୟ ୧୬୦ ଜଣ ଅନାଥ ପିଲାପିଲି ଏଠାରେ ଆଶ୍ରୟ ନେଇ ଶିକ୍ଷାଲାଭ କରୁଛନ୍ତି । ୧୩ ଜଣ କର୍ମଚାରୀ ଏଥିରେ ନିୟୋଜିତ ଅଛନ୍ତି । ଧନ୍ଦାମୂଳକ ଶିକ୍ଷା ସହିତ କୃଷିକର୍ମ ଶିକ୍ଷା ମଧ୍ୟ ଏଠାରେ ଦିଆଯାଉଛି ।



# କେନ୍ଦୁଝରରେ ରେଳ-ବ୍ୟବସ୍ଥା

କେନ୍ଦୁଝରର ନିକଟତମ ରେଳଷ୍ଟେସନ—ବାଂଶପାଣି (ଯୋଡ଼ା) । ବାଂଶପାଣି ଠାରୁ ଟମ୍କା (ଯାଜପୁର) ସଂଯୋଗକାରୀ ରେଳପଥର ନାମ—ଦୈତାରୀ-ବାଂଶପାଣି ରେଳ ପ୍ରକଳ୍ପ । ଏହାର ଦୂରତ୍ୱ—୧୫୫ କି.ମି., ଷ୍ଟେସନ ସଂଖ୍ୟା—୧୩ ।
ମୁଖ୍ୟ ଷ୍ଟେସନଗୁଡ଼ିକର ନାମ—

| | |
|---|---|
| ୧) ନଏଲ (ଜୁରୁଡ଼ି) | ୭) ବସନ୍ତପୁର |
| ୨) ନୟାଗଡ଼ | ୮) ସୀତାବିଞ୍ଜି |
| ୩) ପରଜନପୁର | ୯) ନୀଳକଣ୍ଠେଶ୍ୱର |
| ୪) ଗୋନାସିକା | ୧୦) ହରିଚନ୍ଦନପୁର |
| ୫) କେନ୍ଦୁଝର | ୧୧) ବାହାବଲ |
| ୬) ନରଣପୁର ବା କେନ୍ଦୁଝର ରୋଡ୍ | ୧୨) ଶରଡ଼ପଟା |

୧୩) ଟାଙ୍ଗିରିଆପାଳ

୧୯୯୭ ମସିହା ଜୁନ୍ ସୁଦ୍ଧା ଜୁରୁଡ଼ି ଓ ବାଂଶପାଣି ରେଳପଥ ନିର୍ମାଣ (୧୧ କି.ମି.) କାର୍ଯ୍ୟ ଶେଷ ହୋଇଯିବାର କାର୍ଯ୍ୟକ୍ରମ ଥିଲା ।

ଏଥିରେ ପ୍ରାୟ ୪୦୧କୋଟି ଟଙ୍କା ଖର୍ଚ୍ଚ ଅଟକଳ କରାଯାଇଛି । ଏହି ରେଳପଥ ନିର୍ମିତ ହେଲେ ଖଣିଜସମ୍ପଦ ପରିବହନ ତଥା ଯୋଗାଯୋଗ କ୍ଷେତ୍ରରେ ମୁଖ୍ୟତଃ କାର୍ଯ୍ୟ କରିବ । ଏହି ରେଳପଥ ନିର୍ମାଣ ଫଳରେ ବିହାର ରାଜ୍ୟର ମୁଖ୍ୟ ସହରଗୁଡ଼ିକ ସହିତ ଓଡ଼ିଶାର ମୁଖ୍ୟ ସହରଗୁଡ଼ିକର ସଂଯୋଗ ସହଜସାଧ୍ୟ ହୋଇ-ପାରିବ । ନୂତନ ଭାବେ ଗଢ଼ିଉଠୁଥିବା ଲୌହଶିଳ୍ପ ଓ ଇସ୍ପାତ କାରଖାନାକୁ କଞ୍ଚାମାଲ ଯୋଗାଣ କରାଯାଇପାରିବ ।



## ଓଡ଼ିଶା ମନ୍ତ୍ରୀମଣ୍ଡଳରେ କେନ୍ଦୁଝରର ପ୍ରତିନିଧି

| ପ୍ରତିନିଧି | ନିର୍ବାଚନମଣ୍ଡଳୀ |
|---|---|
| ୧) ଶ୍ରୀ ରାଜବଲ୍ଲଭ ମିଶ୍ର | ପାଟଣା |
| ୨) ଶ୍ରୀ ଗୋବିନ୍ଦ ମୁଣ୍ଡା | କେନ୍ଦୁଝର |
| ୩) ଶ୍ରୀ ନିରଞ୍ଜନ ପଟ୍ଟନାୟକ | ରାମଚନ୍ଦ୍ରପୁର |
| ୪) ଶ୍ରୀ ଜୟଦେବ ଜେନା | ଆନନ୍ଦପୁର |
| ୫) ଶ୍ରୀ ଶ୍ରେଷ୍ଠରାୟ ମାଝି | କେନ୍ଦୁଝର |
| ୬) ଶ୍ରୀ ସହରାଇ ଓରାମ୍ | ଚମ୍ପୁଆ |



## ପାର୍ଲ୍ୟାମେଣ୍ଟରେ କେନ୍ଦୁଝରର ସାଂସଦ

| ପୂର୍ବତନ ସାଂସଦ | ବର୍ତ୍ତମାନ ସାଂସଦ |
|---|---|
| ୧) ଶ୍ରୀ ଲକ୍ଷ୍ମୀ ନାରାୟଣ ଭଞ୍ଜଦେଓ । | ଲୋକସଭା—ଶ୍ରୀ ମାଧବ ସର୍ଦ୍ଦାର । |
| ୨) ଶ୍ରୀ ଗୁରୁଚରଣ ନାଏକ । | ରାଜ୍ୟସଭା—ଶ୍ରୀ ରହାସ ବହାରୀ ବାରିକ । |
| ୩) ଶ୍ରୀ ଗୋବିନ୍ଦ ମୁଣ୍ଡା । | |
| ୪) ଶ୍ରୀ ହରିହର ସୋରେନ୍ । | |
| ୫) ଶ୍ରୀ କୁମର ମାଝି । | |
| ୬) ଶ୍ରୀ ବୈକୁଣ୍ଠନାଥ ସାହୁ (ରାଜ୍ୟସଭା) । | |



## ୧୯୯୫ ରାଜ୍ୟ ବିଧାନସଭାରେ କେନ୍ଦୁଝରର ପ୍ରତିନିଧି

| ପ୍ରତିନିଧି | ନିର୍ବାଚନମଣ୍ଡଳୀ | ଦଳ |
|---|---|---|
| ୧ । ଶ୍ରୀ ନିରଞ୍ଜନ ପଟ୍ଟନାୟକ | ରାମଚନ୍ଦ୍ରପୁର | କଂଗ୍ରେସ |
| ୨ । ଶ୍ରୀ ଜୟଦେବ ଜେନା | ଆନନ୍ଦପୁର | କଂଗ୍ରେସ |
| ୩ । ଶ୍ରୀ ଯୋଗେନ୍ଦ୍ର ନାଏକ | କେନ୍ଦୁଝର | ଭା.ଜ.ପା. |
| ୪ । ଶ୍ରୀ ହୃଷୀକେଶ ନାଏକ | ପାଟଣା | କଂଗ୍ରେସ |
| ୫ । ଶ୍ରୀ ଚନ୍ଦ୍ରସେଣ ନାଏକ | ତେଲକୋଇ | କଂଗ୍ରେସ |
| ୬ । ଶ୍ରୀ ଧନୁର୍ଜୟ ଲଗୁରି | ଚମ୍ପୁଆ | କଂଗ୍ରେସ |



## କେନ୍ଦୁଝରର ଜିଲ୍ଲାପାଳ

| | |
|---|---|
| ୧ । ମୁସାବ୍ ଖାନ୍ | ୧।୧।୪୮—୨୭।୯।୪୮ |
| ୨ । ପି. ସି. ମହାନ୍ତି | ୨୭।୯।୪୮—୨୧।୧୨।୪୯ |
| ୩ । ହୃଦୟ ନାଥ ରଥ | ୨୧।୧୨।୪୯—୯।୧୨।୫୦ |
| ୪ । ଆର. ଏଲ୍. ମେହେଟ୍ଟା | ୧୦।୧୨।୫୦—୧୮।୯।୫୨ |
| ୫ । ଏ. କେ. ମଜୁମ୍ଦାର | ୧୮।୯।୫୨—୩୧।୧୦।୫୩ |

୬ । ଏ. କ. ମେନନ୍ ୦୭।୧୨।୫୩—୧୨।୯।୫୪

୭ । ପ୍ରମୋଦ ସିଂହ ୧୨।୯।୫୪—୧୮।୫।୫୬

୮ । ବି. ଭେଙ୍କଟରମଣ ୧୮।୫।୫୬—୧୬।୯।୫୭

୯ । କେ. ଏସ୍. ବାଓ୍ୱା ୨୫।୧୦।୫୭—୧୫।[illegible]।୫୯

୧୦ । ବି. ବି. ରଥ ୧୬।୩।୫୯—୧୨।୧୦।୬୦

୧୧ । ଜି. ଏନ୍ ଦାସ ୦୨।୧୧।୬୦—୦୭।୧୧।୬୨

୧୨ । ଉଦୟନାଥ ସାହୁ ୦୭।୧୧।୬୨– ୦୯।୦୭।୬୬

୧୩ । ରବି ନାରାୟଣ ଦାସ ୧୦।୦୭।୬୬—୨୨।୧୧।୬୭

୧୪ । ନନ୍ଦାର ରଞ୍ଜନ ହୋତା ୨୨।୧୧।୬୭—୨୫।୧୦।୬୮

୧୫ । ଶ୍ରୀନିବାସ ମହାପାତ୍ର ୧୪।୧୨।୬୮—୭।୬।୭୦

୧୬ । ଏସ୍. ମାର୍ଭିନ୍ ୦୬।୭।୭୦—୧୨।୭।୭୧

୧୭ । ପି. ଆର୍. ଚନ୍ଦ୍ର ୧୨।୭।୭୧—୭।୮।୭୨

୧୮ । ପ୍ୟାରୀମୋହନ ମହାପାତ୍ର ୦୬।୮।୭୨—୨୭।୧୧।୭୪

୧୯ । ଅକ୍ଷୟ କୁମାର ବିଶ୍ୱାଳ ୨୭।୧୧।୭୩—୧୨।୦୫।୭୬

୨୦ । ଫକୀର ଚରଣ ପାଣିଗ୍ରାହୀ ୧୨।୦୫।୭୬—୧୫।୦୯।୭୭

୨୧ । ଜ୍ଞାନେନ୍ଦ୍ର ନାଥ ପୋଦାର ୧୬।୦୯।୭୭—୧୦।୦୭।୭୮

୨୨ । ଡ଼. ପି.ଗୁପ୍ତା ୧୧।୦୭।୭୮—୧୬।୭।୮୦

୨୩ । ଫଣୀଭୂଷଣ ଦାସ ୧୬।୦୭।୮୦—୨୫।୭।୮୩

୨୪ । ଶ୍ୟାମସୁନ୍ଦର ଲେଙ୍କା ୨୫।୭।୮୩—୪।୭।୮୪

୨୫ । ଜୟନ୍ତ କୁମାର ଦେଓ ୪।୭।୮୪—୧୩।୫।୮୬

୨୬ । ଯୁଗଳ କିଶୋର ମହାପାତ୍ର ୪।୬।୮୬—୧୩।୬।୮୭

୨୭ । ଜି. ଧର୍ମଲିଙ୍ଗମ୍ ୧୩।୭।୮୭—୨୬।୪।୯୦

୨୮ । ଏନ୍. ସି. ବାସୁଦେବନ୍ ୨୭।୪।୯୦—୨୨।୩।୯୧

୨୯ । ଅରୁଣ କୁମାର ପଣ୍ଡା ୨୨।୩।୯୧—୧୬।୮।୯୩

୩୦ । ଜଗଦାନନ୍ଦ ପଣ୍ଡା ୧୬।୮।୯୩—୪।୭।୯୪

୩୧ । ନିରଞ୍ଜନ ପାଢ଼ୀ ୪।୭।୧୯୪—୧।୧।୧୯୭

୩୨ । ବେଣୁଧର ମିଶ୍ର ୧୭।୨।୧୯୭—

ଟି. ଦ୍ର.—ବିଭିନ୍ନ ସମୟରେ ଯେଉଁମାନେ ଅସ୍ଥାୟୀ ଦାୟିତ୍ୱରେ ଥିଲେ, ତାଙ୍କର ନାମ ଉଲ୍ଲେଖ କରାଯାଇନାହିଁ ।



# କେନ୍ଦୁଝର ଜିଲ୍ଲାର ନିର୍ବାଚିତ ଜିଲ୍ଲା ପରିଷଦର ସଭ୍ୟବୃନ୍ଦ

ଜିଲ୍ଲା ପରିଷଦ ଅଧ୍ୟକ୍ଷ—ଦେବକୀନନ୍ଦନ ମହାନ୍ତ

ଆନନ୍ଦପୁର ବ୍ଲକ୍ : ୧ । ବନ୍ଦିତା ହେମ୍ବ୍ରମ୍ ୨ । ବାସନ୍ତିଲତା ଦାସ
୩ । ଲୀଳାବତୀ ସେଠୀ

କେନ୍ଦୁଝର ବ୍ଲକ୍ : ୪ । ଡମ୍ବରୁଧର ନାଏକ ୫ । ଶ୍ୟାମସୁନ୍ଦର ମାରାଣ୍ଡି
୬ । ସୁଶୀଳାବାଳା ପାତ୍ର

ଘଟଗାଁ ବ୍ଲକ୍ : ୭ । ସୁନାଫୁଲ ଦଣ୍ଡସେନା ୮ । ଶିବ ପ୍ରସାଦ ସିଂହ
୯ । ଦମୟନ୍ତୀ ଖଣ୍ଡା

ଘସିପୁରା ବ୍ଲକ୍ : ୧୦ । ରମାକାନ୍ତ ନାୟକ ୧୧ । ମନୋରଞ୍ଜନ ଚନ୍ଦ
୧୨ । ପ୍ରଫୁଲ୍ଲ କୁମାର ବେହେରା

ଚମ୍ପୁଆ ବ୍ଲକ୍ : ୧୩ । ହେମନ୍ତ କୁମାର ବାରିକ ୧୪ । ତ୍ରିବେଣୀ ଗିରି
୧୫ । ବଳଭଦ୍ର ମହାନ୍ତ

ଝୁମ୍ପୁରା ବ୍ଲକ୍ : ୧୬ । କୁମୁଦିନୀ ନାଏକ ୧୭ । ଚିତ୍ତରଞ୍ଜନ ବେହେରା
୧୮ । ବୀଣାପାଣି ମହାନ୍ତ

ତେଲକୋଇ ବ୍ଲକ୍ : ୧୯ । ସତ୍ୟବ୍ରତ ପଣ୍ଡା ୨୦ । ଗଣେଶ୍ୱର ନାଏକ

ପାଟଣା ବ୍ଲକ୍ : ୨୧ । ହରିହର ସାହୁ ୨୨ । ଦିଲୀପ ନାଏକ
୨୩ । ଦ୍ରୌପଦୀ ମହାନ୍ତ

ବାଂଶପାଳ ବ୍ଲକ୍ : ୨୪ । କଇଁଫୁଲ ଦେହୁରୀ ୨୫ । ଶ୍ରୀକାନ୍ତ କୁଆଁର

ଘୋଡ଼ା ବ୍ଲକ୍ : ୨୬ । ଖ୍ରୀଷ୍ଟଫର ଜୁଙ୍ଗ୍‌ଡୁଙ୍ଗ୍ ୨୭ । ସରସ୍ୱତୀ ପୂର୍ତ୍ତି
୨୮ । ବୈଦ୍ୟନାଥ ନାଏକ

ସାହାରପଡ଼ା ବ୍ଲକ୍ : ୨୯ । ବୁଛା ସିଂ ୩୦ । ମାନସିଂ ମୁଣ୍ଡା

ହରିଚନ୍ଦନପୁର ବ୍ଲକ୍ : ୩୧ । କନକ ନାଏକ ୩୨ । ଦେବକୀନନ୍ଦନ ମହାନ୍ତ
୩୩ । ପଞ୍ଚାନନ ମୁଣ୍ଡା

ହାଟଡ଼ିହି ବ୍ଲକ୍ : ୩୪ । ବିଜୟ ରାଉତ ୩୫ । ଅକ୍ଷୟ ଜେନା
୩୬ । ପ୍ରାଣନାଥ ଜେନା ୩୭ । ସାବଣୀ ଜେନା



# କେନ୍ଦୁଝରର ପ୍ରଶାସନିକ ତଥ୍ୟ

କ୍ଷେତ୍ରଫଳ—୮,୩୦୩ ବର୍ଗ କି. ମି. (ରାଜ୍ୟର ୫. ୩୩%)

ଅବସ୍ଥିତି : ଅକ୍ଷାଂଶ—୨୧ ଡିଗ୍ରୀ ୧୧ ସେ.ରୁ ୨୨ ଡିଗ୍ରୀ ୧୦ ସେ. ଉତ୍ତର ।
ଦ୍ରାଘିମା—୮୫ ଡିଗ୍ରୀ ୧୧ ସେ.ରୁ ୮୬ ଡିଗ୍ରୀ ୨୨ ସେ. ପୂର୍ବ ।

ସବ୍‌ଡିଭିଜନ—୩ ତହସିଲ୍—୮ (ପାଟଣା ନୂତନ ତହସିଲ)

ବ୍ଲକ୍—୧୩ ଆର୍. ଆଇ. ସର୍କଲ୍—୫୦

ଗ୍ରାମପଞ୍ଚାୟତ—୨୪୪ ଗ୍ରାମ—୨୧୨୫, ସହର—୭

ପୌରପାଳିକା—୩ ବିଜ୍ଞାପିତ ଅଞ୍ଚଳ (NAC)—୧

ବିଧାନସଭା ନିର୍ବାଚନ ମଣ୍ଡଳୀ—୬

ଲୋକସଭା ନିର୍ବାଚନ ମଣ୍ଡଳୀ—୧ (କେନ୍ଦୁଝର)

ବିମାନଘାଟୀ—ରାଇସୁଆଁ (ସଦର ବ୍ଲକ), ଟଣ୍ଡୋ (ଘୋଡ଼ା ବ୍ଲକ)

ନିକଟତମ ରେଲଷ୍ଟେସନ—ଯୋଡ଼ା (ବାଂଶପାଣି) ଓ ଯାଜପୁର
କେନ୍ଦୁଝର ରୋଡ୍ ।

ସାଧାରଣ ବୃଷ୍ଟିପାତ—୧୫୩୪. ୫ ମି. ମିଟର

ଜଙ୍ଗଲ—ମୋଟ ୨୪୯୪. ୩୫ ବର୍ଗ କି. ମି. (ଜିଲ୍ଲାର ୩୦. ୦୨%)

ସଂରକ୍ଷିତ ଜଙ୍ଗଲ—୧,୮୩୩. ୦୨ ବର୍ଗ କି. ମି.

ଚିହ୍ନିତ ସୁରକ୍ଷିତ ଜଙ୍ଗଲ—୬୪୮. ୪୧ ,,

ଅଣଚିହ୍ନିତ ,, —୧୨.୬୮ ,,

ଅନ୍ୟାନ୍ୟ ,, —୦.୨୪ ,,

ପୋଲିସ୍ ଷ୍ଟେସନ୍—୨୦

ନିଆଁ ଲିଭା କେନ୍ଦ୍ର—୫

ସବ୍‌ଜେଲ୍—୨

ଥାନା—୨୦

ମୁଖ୍ୟ ଜେଲ୍‌ଖାନା—୧ (କେନ୍ଦୁଝର)

ସବ୍ ରେଜିଷ୍ଟ୍ରାର ଅଫିସ୍—୬

ପୋଲିସ ସର୍କଲ—୩

ଫାଣ୍ଡି—୧୮

ଲୋକସଂଖ୍ୟା (୧୯୯୧ ଜନଗଣନା ଅନୁସାରେ)

ଜିଲ୍ଲାର ମୋଟ ଜନସଂଖ୍ୟା—୧୩ ଲକ୍ଷ ୩୭ ହଜାର ୨୬

ପୁରୁଷ —୬ ଲକ୍ଷ ୭୭ ହଜାର ୪୮୦

ମହିଳା —୬ ଲକ୍ଷ ୫୯ ହଜାର ୫୪୬

ହରିଜନ —୧, ୫୩ ହଜାର ୬୮୯
(ଲୋକସଂଖ୍ୟାର ୧୧. ୪୯ ଭାଗ)

ଆଦିବାସୀ —୫ ଲକ୍ଷ ୯୫ ହଜାର ୧୮୪
(ଲୋକସଂଖ୍ୟାର ୪୪.୫୨ ଭାଗ)

ଶ୍ରମିକ —୪ ଲକ୍ଷ ୩୯ ହଜାର ୯୫୩

ଜିଲ୍ଲା ଲୋକସଂଖ୍ୟା—ରାଜ୍ୟ ଲୋକସଂଖ୍ୟାର ୪. ୧୮%

ଗ୍ରାମାଞ୍ଚଳରେ ବାସ କରନ୍ତି—୮୭. ୩୩%

ଜନସଂଖ୍ୟାର ସାନ୍ଦ୍ରତା (ପ୍ରତି ବର୍ଗ କି. ମି.) ୧୬୧ ଜଣ



# ବିଭିନ୍ନ ବ୍ଲକ୍‌ର କ୍ଷେତ୍ରଫଳ ଓ ଲୋକସଂଖ୍ୟା

| ବ୍ଲକ୍‌ର ନାମ | କ୍ଷେତ୍ରଫଳ (ବର୍ଗ କି.ମି.) | ଲୋକସଂଖ୍ୟା |
|---|---|---|
| ଆନନ୍ଦପୁର | ୩୦୦.୧୫ | ୮୩,୭୩୧ |
| ବାଂଶପାଳ | ୧,୧୯୧.୦୭ | ୭୦,୭୪୭ |
| ଚମ୍ପୁଆ | ୩୪୫.୫୦ | ୮୫,୮୫୧ |
| ଘସିପୁରା | ୩୬୫.୦୩ | ୧,୨୩,୭୨୭ |
| ଘଟଗାଁ | ୪୬୧.୬୫ | ୮୭,୮୨୬ |
| ହରିଚନ୍ଦନପୁର | ୬୨୨.୦୦ | ୧,୦୩,୩୮୨ |
| ହାଟଡିହି | ୩୨୭.୪୨ | ୧,୨୧,୭୫୭ |
| ଝୁମ୍ପୁରା | ୪୮୪.୩୩ | ୮୩,୪୪୫ |
| ଯୋଡ଼ା | ୪୨୭.୨୭ | ୮୬,୦୪୦ |
| କେନ୍ଦୁଝର | ୪୫୧.୨୬ | ୧,୧୬,୭୨୪ |
| ପାଟଣା | ୪୨୦.୫୬ | ୮୧,୨୨୧ |
| ସାହାରପଡ଼ା | ୩୮୩.୫୩ | ୭୦,୯୦୨ |
| ତେଲକୋଇ | ୫୫୯.୨୯ | ୭୪,୨୧୦ |

## ବିଭିନ୍ନ ସହରର ଲୋକସଂଖ୍ୟା

| ସହରର ନାମ | କ୍ଷେତ୍ରଫଳ (ବର୍ଗ କି.ମି.) | ଲୋକସଂଖ୍ୟା |
|---|---|---|
| ବଡ଼ବିଲ | ୪୧.୪୪ (ପୌରାଞ୍ଚଳ) | ୪୨,୦୩୨ |
| ଯୋଡ଼ା | ୨୨.୪୭ (ପୌରାଞ୍ଚଳ) | ୩୧,୦୬୯ |

| ସହରର ନାମ | କ୍ଷେତ୍ରଫଳ (ବର୍ଗ କି.ମି.) | ଲୋକସଂଖ୍ୟା |
|---|---|---|
| କେନ୍ଦୁଝର | ୨୭.୪୦ (ପୌରାଞ୍ଚଳ) | ୪୧,୯୪୫ |
| ଆନନ୍ଦପୁର | ୭୨.୮୭ (ବିଜ୍ଞାପିତ ଅଞ୍ଚଳ) | ୩୦,୨୭୮ |
| ଚମ୍ପୁଆ | ୪.୯୦ | ୫,୭୪୭ |
| ଦୈତାରି | — | ୪,୪୩୪ |
| ବଳଣି | ୧୧.୪୨ | ୧୧,୩୭୦ |

ସୂଚନା : ଏହି ସହରଗୁଡ଼ିକ ସମ୍ପୃକ୍ତ ବ୍ଲକ୍‌ର କ୍ଷେତ୍ରଫଳ ଓ ଲୋକସଂଖ୍ୟାର ଅନ୍ତର୍ଗତ ।



## କେନ୍ଦୁଝରରେ ସ୍ୱାସ୍ଥ୍ୟ ବ୍ୟବସ୍ଥା

| ବ୍ଲକ୍ | ଡାକ୍ତରଖାନା | ଚିକିତ୍ସାଳୟ | ପ୍ରାଥମିକ ଚିକିତ୍ସାକେନ୍ଦ୍ର | ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ର | ଅତିରିକ୍ତ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର |
|---|---|---|---|---|---|
| ଆନନ୍ଦପୁର | — | — | ୧ | — | ୩ |
| ବାଂଶପାଳ | — | ୧ | — | ୧ | ୨ |
| ଚମ୍ପୁଆ | — | ୧ | — | ୧ | ୩ |
| ଘସିପୁରା | — | — | ୧ | ୧ | ୪ |
| ଘଟଗାଁ | — | — | ୧ | — | ୨ |
| ହରିଚନ୍ଦନପୁର | — | — | ୧ | ୧ | ୩ |
| ହାଟଡିହି | ୨ | — | — | ୧ | ୪ |
| ଝୁମ୍ପୁରା | ୧ | — | — | ୧ | ୨ |
| ଯୋଡ଼ା | — | — | ୧ | — | ୧ |
| କେନ୍ଦୁଝର | ୧ | ୧ | — | ୧ | ୩ |
| ସାହାରପଡ଼ା | — | — | ୧ | — | ୧ |
| ତେଲକୋଇ | ୨ | — | — | ୧ | ୩ |

ସମୁଦାୟ ଶଯ୍ୟାସଂଖ୍ୟା—୫୦୫

## ହୋମିଓପାଥିକ୍ ଚିକିତ୍ସାଳୟ :

| | | | |
|---|---|---|---|
| ବାଂଶପାଳ | ୧ | ଝୁମ୍ପୁରା | ୧ |
| ଚମ୍ପୁଆ | ୩ | ଘୋଡ଼ା | ୨ |
| ଘସିପୁରା | ୫ | କେନ୍ଦୁଝର ସଦର | ୪ |
| ଘଟଗାଁ | ୩ | ପାଟଣା | ୧ |
| ହରିଚନ୍ଦନପୁର | ୨ | ସାହାରପଡ଼ା | ୧ |
| ହାଟଡିହ | ୩ | ତେଲକୋଇ | ୨ |

ସମୁଦାୟ—୨୮
ଡାକ୍ତରଙ୍କ ସଂଖ୍ୟା—୨୮

## ଆୟୁର୍ବେଦିକ ଚିକିତ୍ସାଳୟ :

| | | | |
|---|---|---|---|
| ଆନନ୍ଦପୁର | ୫ | ଝୁମ୍ପୁରା | ୫ |
| ବାଂଶପାଳ | ୩ | ଘୋଡ଼ା | ୨ |
| ଚମ୍ପୁଆ | ୩ | କେନ୍ଦୁଝର ସଦର | ୨ |
| ଘସିପୁରା | ୭ | ପାଟଣା | ୩ |
| ଘଟଗାଁ | ୨ | ସାହାରପଡ଼ା | ୨ |
| ହରିଚନ୍ଦନପୁର | ୪ | ତେଲକୋଇ | ୪ |
| ହାଟଡିହ | ୫ | ଅଚଳ | ୧ |

ସମୁଦାୟ— ୪୮
ଡାକ୍ତରଙ୍କ ସଂଖ୍ୟା— ୫୧

ଗ୍ରାମ୍ୟ ପରିବାର କଲ୍ୟାଣ କେନ୍ଦ୍ର ସଂଖ୍ୟା— ୧୩
ଶିଶୁ ବ୍ୟବଚ୍ଛେଦ କେନ୍ଦ୍ର ସଂଖ୍ୟା— ୪

## ରକ୍ତଭଣ୍ଡାର

ରେଡ୍‌କ୍ରସ୍ ରକ୍ତଭଣ୍ଡାର, ମୁଖ୍ୟ ଚିକିତ୍ସାଳୟ ପରିସର, କେନ୍ଦୁଝର
ରକ୍ତଭଣ୍ଡାର, ଚିକିତ୍ସାଳୟ ପରିସର, ଆନନ୍ଦପୁର ।



## କେନ୍ଦୁଝରରେ ସାଧାରଣ ନିର୍ବାଚନ ୧୯୯୫—ଏକ ଦୃଷ୍ଟିପାତ

| ନିର୍ବାଚନ ମଣ୍ଡଳୀ | ଭୋଟ ଗ୍ରହଣ କେନ୍ଦ୍ର ସଂଖ୍ୟା | ପ୍ରାର୍ଥୀ ସଂଖ୍ୟା |
|---|---|---|
| ଆନନ୍ଦପୁର (S.C.) | ୨୦୮ | ୧୧ |
| ଚମ୍ପୁଆ (S.T.) | ୧୯୭ | ୧୦ |
| ପାଟଣା (S.T.) | ୧୮୩ | ୭ |
| କେନ୍ଦୁଝର (S.T.) | ୨୧୪ | ୯ |
| ତେଲକୋଇ (S.T.) | ୨୨୦ | ୫ |
| ରାମଚନ୍ଦ୍ରପୁର (ସାଧାରଣ) | ୨୧୧ | ୧୦ |

**କିଏ କେତେ ଭୋଟ ପାଇଥିଲେ (ସୌଜନ୍ୟ—ଜିଲ୍ଲା ନିର୍ବାଚନ କାର୍ଯ୍ୟାଳୟ)**

| ଦଳ | ଚମ୍ପୁଆ | ପାଟଣା | କେନ୍ଦୁଝର | ତେଲକୋଇ | ରାମଚନ୍ଦ୍ରପୁର | ଆନନ୍ଦପୁର |
|---|---|---|---|---|---|---|
| କଂଗ୍ରେସ | ୩୭,୮୪୫ | ୫୮,୫୬୮ | ୨୯,୦୨୦ | ୫୨,୪୪୯ | ୫୪,୪୨୫ | ୫୯,୫୭୨ |
| ଜନତା | ୩୨,୬୨୭ | ୩୧,୨୧୪ | ୨୭,୫୩୩ | ୪୭,୦୮୮ | ୪୮,୮୯୧ | ୫୧,୫୭୫ |
| ଝ.ଜେ.ପି | ୯,୪୦୬ | ୨୩,୮୪୧ | ୫୩,୮୭୮ | ୫,୯୫୮ | ୧,୮୪୯ | ୧,୫୭୨ |
| ସି.ପି.ଆଇ | ୮,୬୬୩ | — | — | — | — | — |
| ସମତା | ୭୯୩ | ୧,୦୯୮ | — | — | — | ୨୨୬ |
| ବି. ଏସ୍.ପି. | — | — | — | — | — | ୬୦୯ |
| ଅନ୍ୟାନ୍ୟ | ୩,୬୧୧ | ୩,୭୫୫ | ୯,୭୪୪ | ୪,୨୫୪ | ୧୩,୯୧୫ | ୧,୭୬୫ |
| ବିଜୟୀ ଦଳ | କଂଗ୍ରେସ | କଂଗ୍ରେସ | ଝ.ଜେ.ପି | କଂଗ୍ରେସ | କଂଗ୍ରେସ | କଂଗ୍ରେସ |

# କେନ୍ଦୁଝରରେ ବିଚାର ବ୍ୟବସ୍ଥା

| ବିଚାରପତିଙ୍କ କାର୍ଯ୍ୟାଳୟ | ବିଚାରପତିଙ୍କ ସଂଖ୍ୟା |
|---|---|
| ଜିଲ୍ଲା ଜଜ୍ | ୧ |
| ମୁଖ୍ୟ ବିଚାରବିଭାଗୀୟ ବିଚାରପତି | ୧ |
| ସବ୍ ଜଜ୍ | ୩ |
| ସବ୍‌ଡିଭିଜନାଲ୍ ବିଚାରପତି | ୩ |
| ମୁନ୍‌ସଫ୍ ଜଜ୍ | ୩ |



# କେନ୍ଦୁଝରର ପାଣିପାଗ

**ବାର୍ଷିକ ବୃଷ୍ଟିପାତ**

| | | | |
|---|---|---|---|
| ଆନନ୍ଦପୁର | ୧,୦୪୦.୦ ମି.ମି. | ବାଂଶପାଳ | ୧,୧୯୫.୦ ମି.ମି. |
| ଚମ୍ପୁଆ | ୧,୩୭୦.୦ ,, | ଘସିପୁରା | ୧,୩୧୬.୦ ” |
| ଘଟଗାଁ | ୨,୮୭୬.୦ ” | ହରିଚନ୍ଦନପୁର | ୧,୫୫୪.୦ ” |
| ହାଟଡିହି | ୮୬୫.୦ ” | ଝୁମ୍ପୁରା | ୧,୨୮୬.୦ ” |
| ଯୋଡ଼ା | ୧,୨୫୨.୦ ” | କେନ୍ଦୁଝର | ୨,୮୬୨.୦ ” |
| ପାଟଣା | ୮୦୨.୦ ” | ସାହାରପଡ଼ା | ୬୮୨.୦ ” |
| | | ତେଲକୋଇ | ୧୬୬.୬ ” |
| | | ମୋଟ | ୧୪୬୧.୩ ମି.ମି. |

ସାଧାରଣ ଭାବେ ଜିଲ୍ଲାର ହାରାହାରି ବୃଷ୍ଟିପାତ—୧୫୩୪.୫ ମି.ମି.

### କେନ୍ଦୁଝରର ତାପମାନ : (ହାରାହାରି ଡିଗ୍ରୀ)

| ମାସ | ଅତି ବେଶି | ଅତି କମ୍ | ମାସ | ଅତି ବେଶି | ଅତି କମ୍ |
|---|---|---|---|---|---|
| ଜାନୁଆରି | ୩୦.୬ | ୭.୪ | ଜୁଲାଇ | ୩୩.୫ | ୨୨.୦ |
| ଫେବୃୟାରି | ୩୪.୮ | ୭.୬ | ଅଗଷ୍ଟ | ୩୨.୨ | ୨୧.୬ |
| ମାର୍ଚ୍ଚ | ୩୭.୩ | ୧୨.୩ | ସେପ୍‌ଟେମ୍ବର | ୩୦.୭ | ୯.୪ |
| ଏପ୍ରିଲ | ୪୦.୦ | ୧୫.୦ | ଅକ୍ଟୋବର | ୩୨.୯ | ୧୫.୭ |
| ମେ | ୪୧.୨ | ୧୭.୭ | ନଭେମ୍ବର | ୩୦.୪ | ୧୦.୩ |
| ଜୁନ୍ | ୩୭.୦ | ୨୦.୫ | ଡିସେମ୍ବର | ୨୭,୮ | ୮.୦ |

### କେନ୍ଦୁଝରର ରାସ୍ତାଘାଟ :

| ରାସ୍ତାର ନାମ | କି.ମି. ଦୀର୍ଘତା |
|---|---|
| ୧ । ଜାତୀୟ ରାଜପଥ | ୯୧.୮ |
| ୨ । ରାଜ୍ୟ ରାଜପଥ | ୨୨୮.୭ |
| ୩ । ଦ୍ରୁତଗାମୀ ରାଜପଥ | ୧୮.୭ |
| ୪ । ମୁଖ୍ୟ ଜିଲ୍ଲା ରାସ୍ତା | ୧୪୨.୪ |
| ୫ । ଅନ୍ୟ ଜିଲ୍ଲା ରାସ୍ତା | ୧୮୯.୦ |
| ୬ । ପୌରପାଳିକା ରାସ୍ତା | ୩୩୯.୭ |
| ୭ । ଜଙ୍ଗଲ ରାସ୍ତା | ୨୨୭.୦ |
| ୮ । ଗ୍ରାମପଞ୍ଚାୟତ ରାସ୍ତା | ୨,୪୨୭.୦ |



# କେନ୍ଦୁଝରର ଡାକ ଯୋଗାଯୋଗ ବ୍ୟବସ୍ଥା

| | |
|---|---|
| ମୋଟ ଡାକଘର ସଂଖ୍ୟା | ୪୬୪ |
| ମୁଖ୍ୟ ଡାକଘର—କେନ୍ଦୁଝରଗଡ଼ | ୧ |
| ଉପ-ଡାକଘର | ୬୧ |
| ଶାଖା ଡାକଘର ସଂଖ୍ୟା | ୪୦୨ |
| ଡାକଘର-ତାରଘର ମିଳିତ ସଂଖ୍ୟା | ୨୯ |
| ଜନସାଧାରଣ ସେବା ଫୋନ୍ ବ୍ୟବସ୍ଥା | ୪୧୮ |

**କେନ୍ଦୁଝର ଜିଲ୍ଲାର ଏସ୍. ଟି. ଡି. ନମ୍ବର :**

| ସହର/ଗ୍ରାମର ନାମ | ଏସ୍.ଟି.ଡି. ନମ୍ବର |
|---|---|
| କେନ୍ଦୁଝର | ୦୬୭ ୬୭ |
| ହାଟଡିହି | ୦୬୭ ୩୧୮ |
| ଘଟଗାଁ, ଢେଙ୍କିକୋଟ, ହରିଚନ୍ଦନପୁର | ୦୬୭ ୬.୩ |
| ତେଲକୋଇ | ୦୬୭ ୬୭ |
| ଚମ୍ପୁଆ | ୦୬୭ ୬୭ |
| ଆନନ୍ଦପୁର | ୦୬୭ ୩୧ |
| ଯୋଡ଼ା | ୦୬୭ ୬୭୭ |

| ସହର/ଗ୍ରାମର ନାମ | ଏସ୍. ଟି. ଡି. ନମ୍ବର |
|---|---|
| ଝୁମ୍ପୁରା | ୦୬୭ ୬୭୫ |
| ବଲ୍ଲଣି } କରଞ୍ଜିଆ | ୦୬୭ ୬୭୮ |
| ଘସିପୁରା | ୦୬୭ ୩୧ |
| ପଲାଶପଙ୍ଗା | ୦୫୭ ୬୬୫ |
| ବଡ଼ବିଲ୍ | ୦୬୭ ୬୭ |
| ବାଲେଇପଡା | ୦୬୭ ୬୭୭ |



## କେନ୍ଦୁଝରରେ କଲେଜ

| ବ୍ଲକ୍ | ମହିଳା କଲେଜ | ମୋଟ୍ କଲେଜ | ଅଧ୍ୟାପକ/ଅଧ୍ୟାପିକା |
|---|---|---|---|
| ଆନନ୍ଦପୁର | — | ୦୨ | ୧୪ |
| ବାଂଶପାଳ | — | ୦୧ | ୦୫ |
| ଚମ୍ପୁଆ | — | ୦୬ | ୧୦୫ |
| ଘସିପୁରା | — | ୦୩ | ୪୬ |
| ଘଟଗାଁ | — | ୦୩ | ୪୫ |
| ହରିଚନ୍ଦନପୁର | — | ୦୩ | ୩୪ |
| ହାଟଡ଼ିହି | ୦୧ | ୦୩ | ୫୩ |
| ଝୁମ୍ପୁରା | — | ୦୩ | ୩୩ |
| ଘୋଡ଼ା | — | — | — |
| କେନ୍ଦୁଝର ସଦର | — | ୦୩ | ୩୫ |

| ବ୍ଲକ୍ | ମହିଳା କଲେଜ | ମୋଟ୍ କଲେଜ | ଅଧ୍ୟାପକ/ଅଧ୍ୟାପିକା |
|---|---|---|---|
| ପାଟଣା | — | ୦୪ | ୪୯ |
| ସାହାରପଡ଼ା | — | ୦୩ | ୧୯ |
| ତେଲକୋଇ | — | ୦୪ | ୩୯ |

## ସହରାଞ୍ଚଳ

| | ମହିଳା କଲେଜ | ମୋଟ୍ କଲେଜ | ଅଧ୍ୟାପକ/ଅଧ୍ୟାପିକା |
|---|---|---|---|
| ଆନନ୍ଦପୁର | ୦୧ | ୦୩ | ୯୨ |
| ବଡ଼ବିଲ୍ | — | ୦୧ | ୨୭ |
| ଯୋଡ଼ା | ୦୧ | ୦୧ | ୧୯ |
| କେନ୍ଦୁଝର | ୦୧ | ୦୩ | ୧୧୯ |
| ମୋଟ | ୦୪ | ୪[illegible] | ୭୩୩ |

## ବୈଷୟିକ ଶିକ୍ଷାନୁଷ୍ଠାନ

| | |
|---|---|
| ଓଡ଼ିଶା ମାଇନିଂ ଏବଂ ଇଞ୍ଜିନିୟରିଂ ସ୍କୁଲ ଓ କଲେଜ | କେନ୍ଦୁଝର |
| ଆଇ. ଟି. ଆଇ. | ବଡ଼ବିଲ |
| ମହିଳା ଶିଳ୍ପ ତାଲିମ କେନ୍ଦ୍ର | ଆନନ୍ଦପୁର |
| ଆଇ. ଟି. ଆଇ. | ପଦ୍ମପୁର |
| ଆଇନ କଲେଜ | କେନ୍ଦୁଝର |



# ଗମନାଗମନ ରାସ୍ତାର ଦୂରତା

## କେନ୍ଦୁଝର ସହର ଠାରୁ ଦୂରତା

| ବ୍ଲକ୍ | କି. ମି. | ବ୍ଲକ୍ | କି. ମି. |
|---|---|---|---|
| ଆନନ୍ଦପୁର | ୮୦ | ହାଟଡିହି | ୯୭ |
| ଚମ୍ପୁଆ | ୫୩ | ଝୁମ୍ପୁରା | ୨୩ |
| ବାଂଶପାଳ | ୩୦ | ଯୋଡ଼ା | ୬୭ |
| ଘସିପୁରା | ୮୦ | ପାଟଣା | ୪୯ |
| ଘଟଗାଁ | ୪୫ | ସାହାରପଡ଼ା | ୫୯ |
| ହରିଚନ୍ଦନପୁର | ୪୦ | ତେଲକୋଇ | ୫୦ |

## କେନ୍ଦୁଝର ଜିଲ୍ଲାର ହାଟର ଦୂରତା

(କେନ୍ଦୁଝରଠାରୁ)

| ହାଟ | କି. ମି. | ହାଟ | କି. ମି. |
|---|---|---|---|
| ବଡ଼ବିଲ | ୮୦ | ଜର୍ଢିଗ୍ର | ୩୦ |
| ବାଙ୍କପାଟୁଲି, ଶୁକ୍ରବାର | ୧୭ | ଝୁମ୍ପୁରା | ୨୩ |
| ବାଂଶପାଳ | ୩୦ | ଯୋଡ଼ା | ୬୭ |
| ବାମେବାରି | ୨୫ | କୋଲିମାଟି ଗୁରୁବାର | ୬୦ |

| ହାଟ | କି.ମି. | ହାଟ | କି.ମି. |
|---|---|---|---|
| ବଉପଦା | ୯୬ | ପଶିଳା | ୩୮ |
| ବ୍ରାହ୍ମଣୀପାଳ | ୭୮ | ପାଟଣା | ୪୯ |
| ଚମ୍ପୁଆ, ଶୁକ୍ରବାର | ୫୩ | ଉମ୍ପୁଳି | ୪୦ |
| ଡେଙ୍ଗିକୋଟ, ଶନିବାର | ୩୦ | ରେକୁଟିଆ | ୯୦ |
| ଘଟଗାଁ, ମଙ୍ଗଳବାର | ୪୫ | ସାହାରପଡ଼ା | ୫୯ |
| ହରିଚନ୍ଦନପୁର | ୭୦ | ଶାଳବଣି | ୮୫ |
| ଧକୋଠା, ରବିବାର | ୭୫ | | |



# ଡାକବଙ୍ଗଳା

| ପ୍ରକାର | ସଂଖ୍ୟା |
|---|---|
| ୧ । ରାଜସ୍ୱ ଡାକବଙ୍ଗଳା | ୨୯ |
| ୨ । ପୂର୍ତ୍ତ ବିଭାଗ ଡାକବଙ୍ଗଳା | ୧୩ |
| ୩ । ଜଳସେଚନ ଡାକବଙ୍ଗଳା | ୩ |
| ୪ । ଜାତୀୟ ରାଜପଥ ଡାକବଙ୍ଗଳା | ୨ |
| ୫ । ଜଙ୍ଗଲ ବିଭାଗ ଡାକବଙ୍ଗଳା | ୨ |



## କେନ୍ଦୁଝରର ବ୍ୟାଙ୍କ ସେବା

| ବ୍ଲକ୍‌ର ନାମ | ବାଣିଜ୍ୟିକ | ସମବାୟ | ଆଞ୍ଚଳିକ ଗ୍ରାମ୍ୟବ୍ୟାଙ୍କ |
|---|---|---|---|
| ଆନନ୍ଦପୁର | ୩ | ୨ | ୩ |
| ଘସିପୁର | ୪ | ୨ | ୪ |
| ହାଟଡିହି | ୫ | ୧ | ୩ |
| ଚମ୍ପୁଆ | ୨ | ୨ | ୪ |
| ଯୋଡ଼ା | ୮ | ୧ | ୨ |
| ଝୁମ୍ପୁରା | ୩ | ୧ | ୨ |
| ବାଂଶପାଳ | ୧ | — | ୪ |
| ଘଟଗାଁ | ୩ | ୧ | ୩ |
| ହରିଚନ୍ଦନପୁର | ୭ | — | ୨ |
| କେନ୍ଦୁଝର | ୬ | ୩ | ୪ |
| ପାଟନା | ୩ | ୧ | ୨ |
| ସାହାରପଡ଼ା | ୩ | — | ୧ |
| ତେଲକୋଇ | ୪ | ୧ | ୧ |
| ମୋଟ | ୫୨ | ୧୫ | ୩୫ |



# ସାଂସ୍କୃତିକ ଅନୁଷ୍ଠାନ

| | |
|---|---|
| କଲେକ୍ଟୋରେଟ୍ କଲ୍‌ଚରାଲ କ୍ଲବ୍ | କେନ୍ଦୁଝର |
| ପ୍ରେମଲତିକା କଳାଭବନ | କେନ୍ଦୁଝର |
| ଘୁଙ୍ଗୁର କ୍ଲବ୍ | ପୁରୁଣା ବଜାର |
| ଚଇତାଳି (ନୃତ୍ୟ, ଗୀତ) | ମାଟ୍‌କାମବେଡ଼ା |
| କୌଶିକ୍ ଥିଏଟର | ମାଟ୍‌କାମବେଡ଼ା |
| ରାଧାକୃଷ୍ଣ ସଙ୍ଗୀତ ମହାବିଦ୍ୟାଳୟ | ଚମ୍ପୁଆ |
| ଫୋରମ୍ ଫର୍ ଇକୋନମିକ୍ ଆଣ୍ଡ କଲଚ୍‌ରାଲ୍ ଆଡ୍‌ଭାନ୍‌ସମେଣ୍ଟ | କାଳିକାପ୍ରସାଦ |
| ଫ୍ରେଣ୍ଡସ୍ ଏଣ୍ଡ ଫ୍ରେଣ୍ଡସିପ୍ | କେନ୍ଦୁଝର |
| କାସାଣ୍ଡ୍ରା ସାଂସ୍କୃତିକ ପରିଷଦ | କେନ୍ଦୁଝର |

**ଆଞ୍ଚଳିକ ନୃତ୍ୟ (ଛଉ) :**

| | |
|---|---|
| ମା' ତାରିଣୀ ଛଉ କଲଚରାଲ୍ କ୍ଲବ୍ | ସାହାଡ଼ାପୁର |
| ନାରଣପାଟ ଛଉନୃତ୍ୟ ପ୍ରତିଷ୍ଠାନ | କାମ୍‌ଦା |
| ମା' କାତ୍ୟାୟିନୀ ଛଉନୃତ୍ୟ ପ୍ରତିଷ୍ଠାନ | କାମଦା |
| ଲକ୍ଷ୍ମୀନାରାୟଣ ଛଉନୃତ୍ୟ ସଂଘ | ଅସନପାଟ |

| | |
|---|---|
| ମା' କାଳୀ ବାଶୁଳୀ ଛଉନୃତ୍ୟ | ରାମକୃଷ୍ଣପୁର (ଅସନପାଟ) |
| ବାଶୁଳୀ କଳାମନ୍ଦିର ଛଉନୃତ୍ୟ | ଅସନପାଟ (ମଝିସାହି) |
| ଶିବ ତାଣ୍ଡବ ଛଉନୃତ୍ୟ ସଂଘ | ଅସନପାଟ |
| ଦୁର୍ଗତିନାଶିନୀ ଛଉ ନୃତ୍ୟ ସଂଘ | ମାମୁଁଲି ଯୋଡ଼ାସାହି (ଅସନପାଟ) |
| ହରଗୌରୀ ପ୍ରାଚୀନ ଛଉ ନୃତ୍ୟ ସଂଘ | ବାଶୁଳୀ ସାହି (ଅସନପାଟ) |
| କାମ୍‌ଦା କାଳିକା ଛଉନୃତ୍ୟ ପ୍ରତିଷ୍ଠାନ | କାମ୍‌ଦା |
| ଫୋକ୍-ସଙ୍ଗ୍.ଟି.ଏଲ୍.ସି. ସେଣ୍ଟର | ଶିଶୁପୁର |

**ଆଞ୍ଚଳିକ ନୃତ୍ୟ (ଚାଙ୍ଗୁ) :**

| | |
|---|---|
| ରାଇଡିହା ଚାଙ୍ଗୁନୃତ୍ୟ ପ୍ରତିଷ୍ଠାନ | ରାଇଡିହା |
| କନ୍ୟାଶୀ ଚାଙ୍ଗୁନୃତ୍ୟ ପ୍ରତିଷ୍ଠାନ | କନ୍ୟାଶୀ |



# କେନ୍ଦୁଝରରେ ଆକାଶବାଣୀ

ଆକାଶବାଣୀ ହେଉଛି, ଭାରତର ଏକ ବଳିଷ୍ଠ ଗଣମାଧ୍ୟମ । ଏହାର ମୂଳ ଉଦ୍ଦେଶ୍ୟ—ଜନସାଧାରଣଙ୍କୁ ସୂଚନା, ଶିକ୍ଷା ଓ ମନୋରଞ୍ଜନ ଯୋଗାଇଦେବା । କୁହାଯାଏ—ଯେଉଁ ଅଞ୍ଚଳର ଲୋକେ ଯେତେ ସଚେତନ, ସେ ଅଞ୍ଚଳ ସେତେ ଉନ୍ନତ । ଆଦିବାସୀବହୁଳ ବଣ-ପାହାଡ଼ ଘେରା କେନ୍ଦୁଝର ଜିଲ୍ଲାର ଜନସାଧାରଣଙ୍କୁ ଅଧିକ ବିକାଶମୂଳକ କାର୍ଯ୍ୟକ୍ରମ ସମ୍ପର୍କରେ ସଚେତନ କରାଇ ତାଙ୍କର ଜୀବନ-ଧାରଣର ମାନବୃଦ୍ଧି ଉଦ୍ଦେଶ୍ୟରେ କେନ୍ଦୁଝରଠାରେ ଏକ ନୂତନ ବେତାରକେନ୍ଦ୍ର ସ୍ଥାପନ ପାଇଁ ଭାରତ ସରକାର ୭ମ ପଞ୍ଚବାର୍ଷିକ ଯୋଜନାର ବ୍ୟବସ୍ଥା କଲେ । ଏହି କେନ୍ଦ୍ରଟି ସାଧାରଣ ଆକାଶବାଣୀ କେନ୍ଦ୍ର ଭଳି ନ ହୋଇ ଏକ ସ୍ଥାନୀୟ ବେତାର କେନ୍ଦ୍ର ଭାବେ କାର୍ଯ୍ୟ କରିବ ବୋଲି ସ୍ଥିର ହେଲା । ୧୯୮୮ ମସିହା ନଭେମ୍ବର ମାସ ୨୧ ତାରିଖ ଦିନ ଏହି କେନ୍ଦ୍ର ଓଡ଼ିଶାର ପ୍ରଥମ ସ୍ଥାନୀୟ ବେତାର କେନ୍ଦ୍ର ବା Local Radio Station ଭାବେ କେନ୍ଦୁଝର ସହର ଉପକଣ୍ଠରେ ୬ନମ୍ବର ଜାତୀୟ ରାଜପଥକୁ ଲାଗି ଉଦ୍‌ଘାଟିତ ହେଲା । ଏହାକୁ ଉଦ୍‌ଘାଟନ କରିଥିଲେ—କେନ୍ଦ୍ରମନ୍ତ୍ରୀ ଶ୍ରୀ ଗିରିଧାରୀ ଗମାଙ୍ଗୋ । ଏହାର ପ୍ରସାରଣ କ୍ଷମତା ରହିଲା—୧ କି.ଓ୍ୱାଟ୍ ।

ପ୍ରାଥମିକ ଅବସ୍ଥାରେ ଏହି କେନ୍ଦ୍ର ପ୍ରତ୍ୟହ ସଂଧ୍ୟା ୬ଟାରୁ ୯ଟା, ମାତ୍ର ତିନିଘଣ୍ଟା ପାଇଁ କାର୍ଯ୍ୟକ୍ରମ ପରିବେଷଣ କରୁଥିଲା । ପୂର୍ବରୁ ଆକାଶବାଣୀ କଟକ କେନ୍ଦ୍ରର କାର୍ଯ୍ୟକ୍ରମ ଯେଉଁମାନେ ଭଲଭାବେ ଶୁଣିପାରୁ ନଥିଲେ—ସେମାନଙ୍କ ଅନୁରୋଧକ୍ରମେ କେନ୍ଦୁଝର କେନ୍ଦ୍ରର ପ୍ରସାରଣ ସମୟ ରାତି ଏଗାରଟା ପର୍ଯ୍ୟନ୍ତ ବୃଦ୍ଧି କରାଯାଇଥିଲା ।

ପରବର୍ତ୍ତୀ ସମୟରେ ଓଡ଼ିଶାରେ ବାରିପଦା, ବଲାଙ୍ଗିର, ବ୍ରହ୍ମପୁର, ରାଉରକେଲା, ଯୋରନ୍ଦା ଓ ପୁରୀଠାରେ ସ୍ଥାନୀୟ ବେତାରକେନ୍ଦ୍ରମାନ ପ୍ରତିଷ୍ଠା ହେବା ଫଳରେ ସମସ୍ତ କେନ୍ଦ୍ରର ସମନ୍ୱୟ ରକ୍ଷା କରିବା ଉଦ୍ଦେଶ୍ୟରେ ସମ୍ପ୍ରତି ଆକାଶବାଣୀ କେନ୍ଦୁଝର କେନ୍ଦ୍ର ପ୍ରତ୍ୟହ ଅପରାହ୍ନ ୩ଟାରୁ ୫ଟା ପର୍ଯ୍ୟନ୍ତ ଆକାଶବାଣୀ ବିବିଧଭାରତୀ କାର୍ଯ୍ୟକ୍ରମ ରିଲେ କରିବା ସଙ୍ଗେ ସଙ୍ଗେ ନିଜସ୍ୱ କାର୍ଯ୍ୟକ୍ରମ ୫ଟାରୁ ୮-୩୦

ପର୍ଯ୍ୟନ୍ତ ପ୍ରସାରଣ କରୁଛି । ଜାତୀୟ ସମ୍ବାଦ ପରେ ପରେ ୯-୧୫ ମି.ରେ କାର୍ଯ୍ୟକ୍ରମ ଶେଷ କରୁଛି ।

ଆକାଶବାଣୀ କେନ୍ଦୁଝର ଏକ ସ୍ଥାନୀୟ ବେତାରକେନ୍ଦ୍ର ହୋଇଥିବାରୁ ରେକର୍ଡିଂ ପାଇଁ ଏଠାରେ ମାତ୍ର ଗୋଟିଏ ଷ୍ଟୁଡ଼ିଓ ରହିଛି । ସଙ୍ଗୀତ ବା ନାଟକ ବିଭାଗ ଏଠାରେ ନାହିଁ କିମ୍ବା ଏଠାରେ କଳାକାରମାନଙ୍କ କଣ୍ଠ-ପରୀକ୍ଷା ବ୍ୟବସ୍ଥା ନାହିଁ । ତଥାପି ସ୍ଥାନୀୟ କଳାକାରମାନଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ଏବଂ ପ୍ରତିଭାବାନ ଯୁବକ ଓ ଯୁବତୀ ଛାତ୍ରଛାତ୍ରୀମାନଙ୍କର ପ୍ରତିଭାର ବିକାଶ ପାଇଁ ଏହି କେନ୍ଦ୍ର ସାମୟିକ ସୁବିଧାସୁଯୋଗ ପ୍ରଦାନ କରିଥାଏ । ସ୍ଥାନୀୟ ବେତାର କେନ୍ଦ୍ର ନିୟମ ଅନୁସାରେ ପ୍ରତିଦିନ ଗୃହବାସ, ପଲ୍ଲୀବାଣୀ କାର୍ଯ୍ୟକ୍ରମ ଓ ସାପ୍ତାହିକ ଯୁବବାଣୀ, ଶିଶୁଉଇଜ, ମହିଳାମାନଙ୍କ ପାଇଁ ବସୁନ୍ଧରା, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ କାର୍ଯ୍ୟକ୍ରମ —ସୁଖୀ ସଂସାର, ସାହିତ୍ୟ ପତ୍ରିକା—'କେନ୍ଦୁଝରୀ', ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମ —ବିକାଶପଥେ ସମେତ ତଥ୍ୟମୂଳକ ରୂପକ ପ୍ରସ୍ତୁତ ଏହି କେନ୍ଦ୍ରରୁ ନିୟମିତ ପ୍ରସ୍ତୁତ କରାଯାଇ ପ୍ରଚାର କରାଯାଏ । ଲୋକକଳାର ସୁରକ୍ଷା, ଜୁଆଙ୍ଗ, ଭୂୟାଁ ଓ ସାନ୍ତାଳ ପ୍ରଭୃତି ଆଦିବାସୀ ଭାଇଭଉଣୀମାନଙ୍କ ବିକାଶ ପାଇଁ ଏହି ସ୍ଥାନୀୟ ବେତାରକେନ୍ଦ୍ର ସ୍ୱତନ୍ତ୍ର ବ୍ୟବସ୍ଥା କରିଥାଏ । ତେଣୁ ପ୍ରତିଦିନ ଆଦିବାସୀ ଗୀତ, ସାପ୍ତାହିକ, ଆଦିବାସୀ ଓ ଗ୍ରାମାଞ୍ଚଳ କାର୍ଯ୍ୟକ୍ରମ ତାରିସ' ସମେତ ବିଭିନ୍ନ ଅବସରରେ ଆକାଶବାଣୀ, କେନ୍ଦୁଝର ସ୍ଥାନୀୟ ଲୋକସଙ୍ଗୀତ, ଝୁମର, ଦାସକାଠିଆ ଓ ପାଲା ପ୍ରଭୃତି ପ୍ରଚାର କରିଥାଏ । ଏହାଦ୍ୱାରା ଅସଂଖ୍ୟ ଗ୍ରାମ୍ୟ କଳାକାର ଓ ବିଭିନ୍ନ ସମ୍ପ୍ରଦାୟର ଆଦିବାସୀ କଳାକାର ନିଜସ୍ୱ କଳା ପ୍ରଦର୍ଶନର ସୁଯୋଗ ଲାଭ କରିଥାନ୍ତି । ବିଭିନ୍ନ କାର୍ଯ୍ୟକ୍ରମରେ ବିଶେଷଜ୍ଞମାନେ ଅଂଶଗ୍ରହଣ କରି କୃଷି, ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ବିଷୟରେ ସଚେତନ କରାଇଦେଇଥାନ୍ତି । ମୋଟାମୋଟି ଭାବରେ କହିବାକୁ ଗଲେ— ଆକାଶବାଣୀ କେନ୍ଦୁଝର କେନ୍ଦ୍ରଟି ପ୍ରତିଷ୍ଠା ହେବା ଫଳରେ କେନ୍ଦୁଝରର ଜନସାଧାରଣ ଯଥେଷ୍ଟ ଉପକୃତ ହୋଇପାରୁଛନ୍ତି ।

## କେନ୍ଦ୍ରସରକାରଙ୍କ କ୍ଷେତ୍ର-ପ୍ରଚାର କାର୍ଯ୍ୟାଳୟ

ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟର ଆଉ ଏକ କ୍ଷେତ୍ର-ପ୍ରଚାର କାର୍ଯ୍ୟାଳୟ (Field Publicity Office) କେନ୍ଦୁଝରରର ବଡ଼ହାଳଠାରେ ଅବସ୍ଥିତ । ଏହି କାର୍ଯ୍ୟାଳୟ ତରଫରୁ ଭାରତ ସରକାରଙ୍କର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମ ତଥା ସ୍ୱାସ୍ଥ୍ୟସୁରକ୍ଷା ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକ ସୂଚନା ବିଭିନ୍ନ ଗ୍ରାମାଞ୍ଚଳ ଓ ଜନବହୁଳ ଅଞ୍ଚଳରେ ଯୋଗାଇ ଦିଆଯାଉଛି । ଶବ୍ଦ, ଦୃଶ୍ୟ ତଥା ପୁସ୍ତକ ଓ ଲୋକକଳା ମାଧ୍ୟମରେ ଏହି ସୂଚନା ଲୋକଙ୍କ ହିତ ପାଇଁ ପ୍ରଦାନ କରାଯାଉଛି । □

## କେନ୍ଦୁଝରରେ ଦୂରଦର୍ଶନ

ଆକାଶବାଣୀ କେନ୍ଦୁଝରକୁ ଲାଗି କେନ୍ଦୁଝରଠାରେ ଏକ ଦୂରଦର୍ଶନ ରିଲେକେନ୍ଦ୍ର ତଥା ଦୂରଦର୍ଶନ ରକ୍ଷଣା-ବେକ୍ଷଣ (Maintenance Centre) ସେପ୍ଟେମ୍ବର ୧୯୮୯ ମସିହାରୁ କାର୍ଯ୍ୟକାରୀ ହୋଇଛି । ଏହା ଏକ ସ୍ୱଳ୍ପଶକ୍ତିସମ୍ପନ୍ନ ପ୍ରକ୍ଷେପଣ କେନ୍ଦ୍ର । ଏହି କେନ୍ଦ୍ର କେନ୍ଦୁଝର ଜିଲ୍ଲାରେ ଯୋଡ଼ା ଓ ଆନନ୍ଦପୁରଠାରେ ଥିବା ଦୁଇଟି ପ୍ରକ୍ଷେପଣ କେନ୍ଦ୍ରକୁ ରକ୍ଷଣା-ବେକ୍ଷଣ ପ୍ରଦାନ କରିବା ସଙ୍ଗେ ସଙ୍ଗେ ବାଲେଶ୍ୱର ଜିଲ୍ଲାର ବାଲେଶ୍ୱର ଓ ବାଲିଆପାଳ, ଭଦ୍ରକ ଜିଲ୍ଲାର ଭଦ୍ରକ, ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲା, ବଣେଇ, ଅନୁଗୁଳ ଜିଲ୍ଲାର ପାଲ୍‌ଲହଡ଼ା ଓ ମୟୂରଭଞ୍ଜ ଜିଲ୍ଲାର ବାରିପଦା ପ୍ରକ୍ଷେପଣ କେନ୍ଦ୍ରର ରକ୍ଷଣା-ବେକ୍ଷଣ ଦାୟିତ୍ୱ ବହନ କରିଛି ।



## କେନ୍ଦୁଝରରେ ମୋଟରଗାଡ଼ି

(ମୋଟ ରେଜିଷ୍ଟ୍ରେଟ୍ ଗାଡ଼ି)

| ଗାଡ଼ିର ପ୍ରକାର | ୩୧.୩.୯୬ ସୁଦ୍ଧା | ୩୧.୩.୯୭ ସୁଦ୍ଧା |
|---|---|---|
| ମୋଟର ସାଇକେଲ, ସ୍କୁଟର ଓ ମୋପେଡ୍— | ୧୪,୪୮୧ | ୧୬,୭୭୫ |
| ତିନିଚକିଆ ଗାଡ଼ି— | ୪୨ | ୫୨ |
| ଜିପ୍ ଓ ଷ୍ଟେସନୱାଗନ୍— | ୧,୨୧୦ | ୧,୨୭୧ |

| ଗାଡ଼ିର ପ୍ରକାର | ୩୧.୩.୯୭ ସୁଦ୍ଧା | ୩୧.୩.୯୬ ସୁଦ୍ଧା |
|---|---|---|
| କାର୍— | ୭୯୩ | ୮୪୬ |
| ଟ୍ୟାକ୍ସି— | ୨୫୭ | ୨୭୪ |
| କମାଣ୍ଡର, ଟ୍ରେକର୍ ଇତ୍ୟାଦି— | ୧୬୫ | ୨୧୨ |
| ବସ୍— | ୪୩୩ | ୪୪୬ |
| ମାଲଗାଡ଼ି (ଟ୍ରକ୍)— | ୪,୭୧୭ | ୫,୦୮୪ |
| ପେଟ୍ରୋଲ ଓ ପାଣିବୁହା— | ୩୯ | ୪୦ |
| ଟ୍ରାକ୍ଟର ଓ ଟ୍ରେଲର— | ୬୯୩ | ୭୯୧ |
| ଅନ୍ୟାନ୍ୟ ଗାଡ଼ି— | ୬୧ | ୬୧ |
| | ୨୨,୮୯୧ | ୨୫,୭୪୨ |

ଏହି ସୂଚନା କେନ୍ଦୁଝର ଆଞ୍ଚଳିକ ପରିବହନ ଅଧିକାରୀଙ୍କ କାର୍ଯ୍ୟାଳୟରୁ ସଂଗୃହୀତ । ଏହି ଗାଡ଼ିଗୁଡ଼ିକ ମଧ୍ୟରୁ କେତେକ ଅନ୍ୟତ୍ର ଚାଲିଯାଇଛି ଏବଂ ପ୍ରାୟ ୩ ହଜାର ଗାଡ଼ି ଅକାମୀ ହୋଇସାରିଲାଣି ।



# ସ୍ୱାଧୀନତା ପୂର୍ବବର୍ତ୍ତୀ କେନ୍ଦୁଝରରେ ଓଡ଼ିଆ ସାହିତ୍ୟ

ବିଶ୍ୱାସ କରାଯାଏ—ଅଷ୍ଟମ ଶତାବ୍ଦୀରେ ଲିଖିତ ଚର୍ଯ୍ୟା-ଗୀତକାର ଲେଖକ ଭୁସୁକୁପା, ରାହୁଲ ଓ ଶାନ୍ତିଦେବ ହୋଇଛନ୍ତି—ଏଇ କେନ୍ଦୁଝର ମାଟିର କବି ।

ତ୍ରୟୋଦଶ ଶତାବ୍ଦୀର ଯଦୁନାଥ ଭଞ୍ଜ ଓ ପଞ୍ଚଦଶ ଶତାବ୍ଦୀର ହାଡ଼ୁଭଞ୍ଜଙ୍କ ରଚନାବଳୀରେ ଅସଂଖ୍ୟ ଚଉପଦୀ, ଜଣାଣ ଓ ଭଜନ ଇତ୍ୟାଦି ପରିଲକ୍ଷିତ ହୁଏ । ଶିବନାରାୟଣ ଭଞ୍ଜ ମଧ୍ୟ ଅନେକ ଚଉତିଶା ରଚନା କରିଥିଲେ । ରାଜକବି ଗୋବିନ୍ଦ ଭଞ୍ଜ ରାମଗାଥା, ଭକ୍ତି ବିନୋଦ, ଚରଣ ସୁଧାନିଧି, ବହୁଲା ଚରିତ ପ୍ରଭୃତି କାବ୍ୟ ଓ ଅସଂଖ୍ୟ ଭଜନ, ଜଣାଣ, ଚଉପଦୀ, ରସପୋଇ, ତୃଣାସୁର ବଧ ଗାଥା ପ୍ରଭୃତି ରଚନା କରିଥିଲେ । ରାଜା ଶିବନାରାୟଣ ଭଞ୍ଜଙ୍କ ରାଜସଭାରେ ଆଉ କବି ନରସିଂହ ମିଶ୍ର' 'ଶିବନାରାୟଣ ଭଞ୍ଜ ମହୋଦୟମ୍' ନାମକ ସଂସ୍କୃତ ନାଟକ ରଚନା କରିଥିଲେ ।

ରାଜା ଲକ୍ଷ୍ମୀନାରାୟଣ ଭଞ୍ଜ (୧୭୫୪-୧୭୮୮) ଜଣେ ଗୀତକାର ଭାବେ ଅନେକ ଚଉପଦୀ, ଭଜନ, ଜଣାଣ ରଚନା କରିଥିଲେ । ରାଜା ଜଗନ୍ନାଥ ଭଞ୍ଜଙ୍କ (୧୭୮୮-୧୭୦୦) ଲକ୍ଷ୍ମୀ ଜଗନ୍ନାଥ ବଚନିକା ବା ଦୋହାଗୀତ ରଚନା କରିଥିଲେ । ରଜା ନୃସିଂହ ନାରାୟଣ ଭଞ୍ଜ (୧୭୨୭-୧୭୩୬) ମଣ୍ଡନାର ଉଦ୍ଦୀପନ ଗୀତ ଓ ଅନେକ ଚଉପଦୀ ରଚନା କରିଥିଲେ । ରାଜା ଜଗତେଶ୍ୱର ଭଞ୍ଜ, ଅଶ୍ୱଶାସ୍ତ୍ର (୧୭୫୮-୧୭୭୪) ମନୋଦରୀ, କୋଇଲି ଓ ଲୀଳାବତୀ ପ୍ରଭୃତି କାବ୍ୟ ରଚନା କରିଥିଲେ । ରାଜା ବଳଭଦ୍ର ଭଞ୍ଜ (୧୭୭୪-୧୭୯୨) 'ଅମ୍ବିକା ବିଳାସ' କାବ୍ୟ ଓ ଚୌପଦୀ-ଚଉତିଶା ରଚନା କରିଥିଲେ । ଅମ୍ବିକା ବିଳାସର ଚମତ୍କାର ଶବ୍ଦ-ବିନ୍ୟାସ ଓ ଶବ୍ଦ-ସଂଯୋଜନା ଆଜିର ପାଠକଙ୍କୁ ମଧ୍ୟ ଚମତ୍କୃତ କରିଦିଏ । ତାଙ୍କର ଅନ୍ୟ କାବ୍ୟକୃତିଗୁଡ଼ିକ ହେଲା—ଦେବସ୍ତୁତି, ଭଗବତୀ ଓ ମାଳଶ୍ରୀ । ତାଙ୍କର ରାଜତ୍ୱରେ

ଆଇ ପଣ୍ଡିତ ନାରାୟଣ ବ୍ରହ୍ମ ରାଜଗୁରୁ ଜମ୍ବୁଦ୍ୱୀପ ଓ ସଙ୍ଗୀତ-ରତ୍ନ ରଚନା କରିଥିଲେ ।

ରାଜା ଜନାର୍ଦ୍ଦନ ଭଞ୍ଜ (୧୭୯୨-୧୮୩୧) ଲୀଳାବତୀ କାବ୍ୟ ଓ ଚଉପଦୀ-ଜଣାଣ ରଚନା କରିଥିଲେ । ରାଜା ଧନୁର୍ଜୟ ନାରାୟଣ ଭଞ୍ଜ (୧୮୬୮-୧୯୦୫) ଅସଂଖ୍ୟ ମୂଲ୍ୟବାନ ପୁସ୍ତକ ସଂଗ୍ରହକରି ଏକ ପାଠାଗାର ସ୍ଥାପନ କରିଥିଲେ । ରାଜା ଗଦାଧର ଭଞ୍ଜଙ୍କ ରସମୁକ୍ତାବଳି ତଥା ପାଟରାଣୀ ବିଷ୍ଣୁପ୍ରିୟା ମହାଦେଇ ମଧ୍ୟ ଦୁଇଖଣ୍ଡ କାବ୍ୟ ରଚନା କରିଥିବାର ଶୁଣାଯାଏ ।

ଓଡ଼ିଆ ସାହିତ୍ୟର ସେନାପତି ଫକୀରମୋହନ ଧନୁର୍ଜୟ ନାରାୟଣ ଭଞ୍ଜଙ୍କ ସମୟରେ କେନ୍ଦୁଝରରେ ଥାଇ ତାଙ୍କର ଅମର-କୃତି ଭ୍ରମଣକାହାଣୀ ରଚନା କରିଥିଲେ । ୧୮୮୯ ମସିହାରେ ଆନନ୍ଦପୁରଠାରେ ଆନନ୍ଦ ପ୍ରେସ୍ ପ୍ରତିଷ୍ଠା କରି ସେ ଓଡ଼ିଆ ସାହିତ୍ୟର ପ୍ରଭୂତ ବିକାଶ ସାଧନ କରିଥିଲେ । ରାଣୀ ମନୋଜମଞ୍ଜରୀ ଦେବୀଙ୍କ (୧୯୨୭-୧୯୪୭) ତିନିଖଣ୍ଡ ପୁସ୍ତକ ମଧ୍ୟରୁ ଖଣ୍ଡିଏ ଗଦ୍ୟ ସାହିତ୍ୟ ମଧ୍ୟ ଏହି ସମୟ ମଧ୍ୟରେ ରଚିତ ହୋଇଥିଲା ।

ରାଜା ବଳଭଦ୍ର ଭଞ୍ଜ ଜଣେ ସାହିତ୍ୟପ୍ରେମୀ ଥିବାରୁ ତାଙ୍କର ପୃଷ୍ଠପୋଷକତାରେ ବଳଭଦ୍ର ସାହିତ୍ୟ ସଂସଦ ପ୍ରତିଷ୍ଠା ଲାଭ କରିଥିଲା । ସଂସଦର ମୁଖପତ୍ର ଭାବେ 'ବନବାଣୀ' ପତ୍ରିକା ମଧ୍ୟ ପ୍ରକାଶ ପାଉଥିଲା ।

ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ବିଭିନ୍ନ ପୋଥି ସଂଗ୍ରହ ଓ ଅନୁବାଦ କରି କେନ୍ଦୁଝର ସାହିତ୍ୟକୁ ପ୍ରଚାର ଓ ପ୍ରସାର କରିଥିଲେ । ତାଙ୍କଦ୍ୱାରା ରଚିତ ପୁଷ୍ପଗିରି, ଭଞ୍ଜବଂଶ ଚରିତ, ରତ୍ନଗିରି ପ୍ରଭୃତି ପୁସ୍ତକଗୁଡ଼ିକ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛି । ଉମେଶ ଚନ୍ଦ୍ର ସରକାରଙ୍କ ରଚିତ 'କେନ୍ଦୁଝର ବିଦ୍ରୋହ' ପୁସ୍ତକଟି ମୁକୁର ପତ୍ରିକାରେ ପ୍ରକାଶ ପାଇଥିଲା ।

କେନ୍ଦୁଝରର ଆଦି-ମଣିଷ ଭୂୟାଁମାନଙ୍କ ଜୀବନପ୍ରଣାଳୀକୁ ନେଇ ଗୋପାଳ ବଲ୍ଲଭ ଦାସ 'ଭୀମା ଭୂୟାଁ' ରଚନା କରି ଓଡ଼ିଆ ଉପନ୍ୟାସର ମୂଳଦୁଆକୁ ମଜଭୁତ କରିଥିଲେ ।

ଷ୍ଟେଟରାୟ ଲକ୍ଷ୍ମୀନାରାୟଣ ଭଞ୍ଜ ତାଙ୍କର ମାତା ପ୍ରଭାସମଞ୍ଜରୀଙ୍କ ସ୍ମୃତିରେ ପାଠାଗାର ଓ ପତ୍ନୀଙ୍କ ନାମରେ ପ୍ରେମଲତିକା କଳାଭବନ, ସଂଗ୍ରହାଳୟ ପ୍ରତିଷ୍ଠା କରି ସେଥିରେ ଅନେକ ମୂଲ୍ୟବାନ ପୋଥି ଓ ମୂଲ୍ୟବାନ ପୁସ୍ତକଗୁଡ଼ିକୁ ସାଇତି ରଖିଥିଲେ ।

କେନ୍ଦୁଝର ଜିଲାର ପ୍ରାଚୀନ ଲେଖକ ଓ କବିମାନଙ୍କ ମଧ୍ୟରୁ କବିଚନ୍ଦ୍ର ରସାନନ୍ଦ ନାୟକ—ଧରଣୀ ଗୀତିକା, ଚଉତିଶା ଓ ଚଉପଦୀ, ବାସୁଦେବ ମିଶ୍ର ବଡ଼-ପଣ୍ଡା—ଶାଳଗ୍ରାମ ଲକ୍ଷଣ, ସଂଗ୍ରାମ ଲହରୀ, ଜାତି-ମଳିକା, ପରମାନନ୍ଦ ମିଶ୍ର—ମହାପ୍ରସ୍ଥାଣ, ରୁକ୍ମଣୀ ନାଟକ, ନରୋତ୍ତମ ପଟ୍ଟନାୟକ, ସୁଧାସାଗର, ଗୋପଲୀଳା ଷୋଳ, ରାମଚନ୍ଦ୍ର ପରିଚ୍ଛା—ହନୁମାନ ଚଉତିଶା, ବନମାଳୀ ପଟ୍ଟନାୟକ—ମହାପଦ୍ମ ବନ୍ଧ, କରୁଣାକୂଳ କୌମୁଦୀ, ନରହରି ମିଶ୍ର—ରସବଲ୍ଲୀ, ହଳଧର ମିଶ୍ର—କଳ୍କୀ ପୁରାଣ, ନାରାୟଣ ଦାସ—ରାମାୟଣ, ବୀରଭଦ୍ର ପାଣିଗ୍ରାହୀ—ଶଙ୍କର ଗୌରୀ, ଘନଶ୍ୟାମ ନନ୍ଦ—ଦାମିକର୍ଣ୍ଣି, ମଧୁ ସ୍ୱାଇଁ—ଗୋକୁଳାନନ୍ଦ, ଦୀନବନ୍ଧୁ—ଅଭିମନ୍ୟୁ ବଧ, ପରମାନନ୍ଦ ଭର—ପଦ୍ମାବତୀ ପରିଣୟ, ପ୍ରାକୃତ ଚଣ୍ଡୀ ପ୍ରଭୃତି ରଚନା କରିଥିଲେ । ଫଳରେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିବାରେ ଏମାନଙ୍କ ଅବଦାନକୁ ଭୁଲି ହେବନାହିଁ ।

କେନ୍ଦୁଝରରେ 'ବଳଭଦ୍ର ସାହିତ୍ୟ ସଂସଦ' ଆନୁକୂଲ୍ୟରେ ପ୍ରକାଶିତ 'ବନବାଣୀ' ପତ୍ରିକା ପ୍ରକାଶ ପାଇବା ଫଳରେ ନୂତନ ଉତ୍ସାହ ଦେଖାଦେଇଥିଲା । ନୂତନ ଓ ପୁରାତନ ଲେଖକ-କବିଙ୍କ ଦୃଷ୍ଟିରେ ପତ୍ରିକାଟି ସମୃଦ୍ଧ ହେବା ସଙ୍ଗେ ସଙ୍ଗେ ରୁଚିର ମଧ୍ୟ ପରିବର୍ତ୍ତନ ଘଟିଥିଲା ।



| ଅନୁଷ୍ଠାନ | ଅନୁଷ୍ଠାନର ମୁଖ୍ୟ | ଅନୁଷ୍ଠାନ ଦ୍ୱାରା ପ୍ରକଳ୍ପର ପରିଚାଳିତ ଗ୍ରାମପଞ୍ଚାୟତ |
|---|---|---|
| **ଆନନ୍ଦପୁର ବ୍ଲକ୍** | | |
| ୧ । ଧକୋଠା ଯୁବକ ସଂଘ | ରମେଶ ଚନ୍ଦ୍ର ସାହୁ | ପଣସଡିହା, ମନୋହରପୁର, ଗୟାଳମୁଣ୍ଡା, ବାଉଁଶ ଗଡ଼ |
| ୨ । ଗୋପେଇଶୁଣୀ ଯୁବକ ସଂଘ | ଭାଗୀରଥି ସେଠୀ | ଧକୋଠା, ବାଇଲେ, ପଞ୍ଚୁପାଲି, |
| ୩ । ଶସ୍ୟାଦ | ସଚ୍ଚିଦାନନ୍ଦ ପଣ୍ଡା | କୋଡ଼ପଡ଼ା, ଶାଳବଣୀ |
| ୪ । ଆଞ୍ଚଳିକ ପରିବେଶ ସୁରକ୍ଷା ପରିଷଦ | ନୃସିଂହ ଚରଣ ଜେନା | କଣ୍ଟିପାଳ, ଭରତପୁର |
| ୫ । ଜୟଭାରତ ଯୁବକ ସଂଘ | ପ୍ରଫୁଲ୍ଲ କୁମାର ସାହୁ | ବେଲବାହାଲି, ଜଳସୁଆ |
| ୬ । ବାର୍ଡ | ଭରତ ଚନ୍ଦ୍ର ସାହୁ | କୋଲିମାଟି |
| ୭ । ସିଦ୍ଧେଶ୍ୱର ଆଦିବାସୀ | ସୁଶ୍ରୀ ବାସନ୍ତୀବାଳା ପାଢ଼ୀ | କୋଲିମାଟି |
| ଉନ୍ନୟନ ପ୍ରକଳ୍ପ | | |
| ୮ । ସଙ୍ଗ୍ରାମ | ଚିନ୍ମୟ କୁମାର ଭଞ୍ଜ | ଆନନ୍ଦପୁର ସହରାଞ୍ଚଳ |
| **ବାଂଶପାଳ ବ୍ଲକ୍** | | |
| ୧ । ଜନସ୍ୱାସ୍ଥ୍ୟ | ରବୀନ୍ଦ୍ର କୁମାର ମହାରଣା | ସୁଆକାଟି, ବାଘାକୁମୁଟିଆ, କୁଅଁର |
| ୨ । ଜାଗିତତ | ରଙ୍ଗାଧର ବେହେରା | କାଦକଲା, ନୟାକୋଟ, ଉପର ରାଇଗୋଡ଼ା |
| ୩ । S. E. D. P. | ଧନଞ୍ଜୟ ବଳବାନ୍ତିଲ | ଯାହା, ସିଂହପୁର, ତଳମାକାନ୍ତ |
| ୪ । ମହାଲକ୍ଷ୍ମୀ ଯୁବକ ସଂଘ | ଜଗନ୍ନାଥ ପାତ୍ର | ବାଂଶପାଳ, ସାହାରପୁର |

| | | |
|---|---|---|
| ୫ । ସୂର୍ଯ୍ୟ | ସୁଶାନ୍ତ ସାମଲ | କରଙ୍ଗାଡ଼ିହ୍ମ, ଫୁଲଝର |
| ୬ । R.S.E.D.P. | ପଶ୍ଚିକ୍ତ ବାରିକ | କୁମୁଣ୍ଡି |
| ୭ । ବନବାସୀ ଚେତନା ମଣ୍ଡଳ | ଙ୍କାରବର ନାୟକ | ଗୋନାସିକା |
| ୮ । ପଲ୍ଲୀ ବିକାଶ | ମାଝି ଗୃଚାର | ଡମେଇ |
| ୯ । T.R.D.S.S.O. | ଗୌର ଚରଣ ମହାନ୍ତ | କୋଡ଼ପଶା, ବାଉ୍ହାଗଡ଼ |
| ୧୦ । ବନବାସୀ ବିକାଶ ସଂଗଠନ | ପ୍ରଭାତ କୁସୁମ ପଟ୍ଟନାୟକ | ଝଣ |

## ଚମ୍ପୁଆ ବ୍ଲକ୍

| | | |
|---|---|---|
| ୧ । ପ୍ରକଳ୍ପ | ବିପ୍ଳବ ମିଶ୍ର | ଜ୍ୟୋତିପୁର, ଜଜପଟି, ସଙ୍ଗଣୀ |
| ୨ । ସ୍ୱର୍ଣ୍ଣମୟୀ କ୍ଲବ୍ | ଶ୍ରୀନାଥ ମହାନ୍ତ | କାଲି |
| ୩ । ସତ୍ୟବାଦୀ ଯୁବକ ସଂଘ | ବିଜୟାନନ୍ଦ ବାରିକ | ଭୂଇଁପୁର, ପଡ଼ୁଆ |
| ୪ । ଜୟଦୁର୍ଗା କଲଚରାଲ୍ କ୍ଲବ୍ | ସୁଶାନ୍ତ ଚୌଧୁରୀ | କରଂଜିଆ, କାଶିପାଳ |
| ୫ । ପାରିଜାତ ଯୁବକ ସଂଘ | ବିଜୟ କୁମାର ବାରିକ | ଭଣ୍ଡା, ରଙ୍ଗାମାଟିଆ |
| ୬ । U.S.A.C. | ସତ୍ୟବ୍ରତ ପ୍ରଧାନ | ଛଡବାଲି |
| ୭ । ଲକ୍ଷ୍ମୀନାରାୟଣ କ୍ଲବ୍ | ପ୍ରଦୀପ କୁମାର ପ୍ରଧାନ | ବଡ଼ନଇ, ସରିଇ |
| ୮ । ନାରୀମୁକ୍ତି | ଇନ୍ଦୁଲତା ମିଶ୍ର | ଚମ୍ପୁଆ, ରଙ୍ଗଆ |
| ୯ । ROSES | ଶେଖ ଫୟାଜ ମହମ୍ମଦ | ଜାମୁଦଲକ |
| ୧୦ । C.D.S. | ରମେଶ ଚନ୍ଦ୍ର ପ୍ରଧାନ | କୋଦଗାଞ୍ଜିଆ |
| ୧୧ । ନେତାଜୀ ଯୁବକ ସଂଘ | ଚତୁର୍ଭୁଜ ମହାନ୍ତ | ପର୍ଣ୍ଣଲା, ରେମୁଳି |

## ଘସିପୁର ବ୍ଲକ୍

୧ । U.V.D.O. — ରବୀନ୍ଦ୍ର କୁମାର ଜେନା — ଖାଲଆ ମେଣ୍ଢା, ଭଣ୍ଡାରଡାହା

୨ । ASSA — ବାଗୁନ ମହାନ୍ତ — ଗୋପୀଖାଲ, ବାଟୋ, ସାଲଦେଇ

୩ । ସତ୍ୟନରଞ୍ଜନ ସେବା ସଂଘ — କମଳ ଲୋଚନ ନାୟକ — କେଶଦୁରାପାଳ, ଧରଡ଼ପାଳ, ଦେଓଗାଁ

୪ । ଅମର ଜ୍ୟୋତି କ୍ଲବ୍ — ଅରୁଣ କୁମାର ବଳ — ଡରମୂଳ

୫ । ବଣ୍ଡିକାଳ ଚେତନା ସମାଜ — ପଞ୍ଚାନନ ରାଉତ — ରାଧିକାଦେଇପୁର

୬ । ଶ୍ରୀଶ୍ରୀ ଭଣୁଗୁରୁ ବାସ୍ଥାପାଗଳ ଆଞ୍ଚଳିକ ସେବାସଂସ୍ଥା — ରବୀନ୍ଦ୍ର କୁମାର ରାଉତ — ବଳରାମପୁର

୭ । ବ୍ରାହ୍ମଣଦେଖା କ୍ଲବ୍ — ସୁଦର୍ଶନ ସାହୁ — ମଚ୍ଛାଲୋ, ମଦନପୁର, ଗଡ଼ବାନ୍ଧଗୋଡ଼ା

୮ । ଗୋପବନ୍ଧୁ କଲ୍‌ଚରାଲ କ୍ଲବ୍ — ସୁରେନ୍ଦ୍ର କୁମାର ସାହୁ — ପୁରୁଣାବନ୍ଧ ଗୋଡ଼ା, ଗାଁପୁର, ଅଳନ୍ଦ

୯ । ଗୀତାଞ୍ଜଳି ସେବା ସମାଜ — ଜୟଦେବ ନାୟକ — ରାମଚନ୍ଦ୍ରପୁର, ଡବୁଆଁ

## ଘଟଗାଁ ବ୍ଲକ୍

୧ । ଜନଚେତନା ପରିଷଦ — କର୍ଣ୍ଣାଟ କିଶୋର ଜେନା — ବସନ୍ତପୁର, ଘଣ୍ଟାପଡ଼ା, ସ୍ୱରୁମୁଣ୍ଡା, ବଡ଼ପିଚ୍ଛୁଳା

୨ । ସତ୍ୟନାରାୟଣ କ୍ଲବ୍ — ଖଗେଶ୍ୱର ଦାସ — ପଟିଲୋ

୩ । ମା ତାରିଣୀ ଯୁବକ ସଂଘ — ଦିବାକର ଖଣ୍ଡା — ବନନ୍ଦା

୪ । ଗାନ୍ଧୀ ସେବା କେନ୍ଦ୍ର — ପୁରନ୍ଦର ମହାନ୍ତ — ପିପିଲିଆ

୫ । ଜୟନ୍ତୀ କ୍ଲବ୍ — ନବକିଶୋର ମହାନ୍ତ — ତରା, ବାଲିପୋଖରୀ, ଛୋଟରାଣୀ ପୋଖରୀ

୬ । ଶୋଭନୀୟ ଶିକ୍ଷାଶ୍ରମ — ଅଶୋକ କୁମାର ଦେଓ — ଗଦାଧରପୁର, ମୁକୁନ୍ଦପୁର ପାଟଣା

୭ । ସବୁଜ ସାଥୀର ଯୁବକ ସଂଘ — ବିଜୟ କୁମାର ପଲେଇ — ବଡ଼ ମଶିଣାବଳୀ

| | | |
|---|---|---|
| ୮ । ଇଣ୍ଡିଆ ଡେଭେଲପ୍‌ମେଣ୍ଟ ପ୍ରୋଜେକ୍ଟ | ଗୋକୁଳାନନ୍ଦ ଓଝା | ଉପରଡିହା, ବଡ଼ଜାମୁପଶି |
| ୯ । ଜନତା ଯୁବକ ସଂଘ | ଚନ୍ଦ୍ରରଞ୍ଜନ ପଣ୍ଡା | ବାରହାଟିପୁର |
| ୧୦ । ଆଶ୍ରା | ସନ୍ତୋଷ କୁମାର ସାହୁ | ଢେଙ୍କିକୋଟ |
| ୧୧ । ସାର୍ପ | ମହେଶ୍ୱର ସାହୁ | ମୁକ୍ତାପୁର |
| ୧୨ । ବିକାଶ ନିକେତନ | ହେମନ୍ତ କୁମାର ଗିରି | ମନୋହରପୁର, ସାନ୍ତ୍ରାପୁର, ଖୋଲବେଡ଼ା |

## ହରିଚନ୍ଦନପୁର ବ୍ଲକ୍

| | | |
|---|---|---|
| ୧ । K R I D T I | ଦୁଷ୍କର ବାରିକ | ଶରଗଡ଼ ପଟା, ଧୁରୁଡ଼ି ଆମ୍ବ, ଜଂଘିରା, ପିଠାଗୋଳ, ରେବଣା ପଲାଶପାଳ |
| ୨ । C D A | ସଞ୍ଜୀବ ପାଇକରାୟ | ବଡ଼ ପଲାଶପାଳ, ଭୁଇଁ ରପୁର |
| ୩ । ଗଣ ଚେତନା | ମୋହନ ମହାନ୍ତ | ହୁଣ୍ଡା, ତେଲ୍ଲାପଶି, ବକ୍ସି ବାରଗା |
| ୪ । P A R R | ପୀତାମ୍ବର ଘଣା | କୁଂଗା, ମନୋହରପୁର |
| ୫ । V A R A S A | ପୀତାମ୍ବର ମିଶ୍ର | ଜାମୁଘୋଡ଼ା, ଯୂନାପେଣ୍ଡୁ |
| ୬ । ଆଞ୍ଚଳିକ ଶ୍ରମିକ ସଂଗଠନ | ଉଦୟ ମୁର୍ମୁ | ଭଗାମୁଣ୍ଡା |
| ୭ । ବିଶ୍ୱଜ୍ଞାନ ଚେତନା ସମାଜ | ପଞ୍ଚାନନ ରାଉତ | ଦୈତାରି, ଟାଙ୍ଗିରିଆପାଳ |

## ହାଟଡିହ ବ୍ଲକ୍

| | | |
|---|---|---|
| ୧ । ଜଗପ୍ରିୟ ଯୁବ ପରିଷଦ | ଅଲେଖ ଚନ୍ଦ୍ର ନାୟକ | ଆମ୍ବେ, ପଞ୍ଚୁଗୋଛିଆ |
| ୨ । ଗୌରବ ନାରାୟଣ ପାଠାଗାର | ମୁରଲୀଧର ବେହେରା | ବଡ଼ରମ୍ଭାସ |

| | | |
|---|---|---|
| ୩ । ଅନ୍ତ୍ୟୋଦୟ ଚେତନା କେନ୍ଦ୍ର | ବିଷ୍ଣୁ ପଦରଜ ମହାନ୍ତି | ହରିଗଡ଼, ବାଲିବରେଇ, ଚେଙ୍ଗା, କଅଁଳେଇ ବନ୍ଧପାଳ |
| ୪ । ବୀର ସୁରେନ୍ଦ୍ର ସାହା ଯୁବକ ସଂଘ | ଅକ୍ଷୟ କୁମାର ବରାଳ | ଟଙ୍ଗ୍ରେ, ମାସଙ୍ଗ |
| ୫ । ଗାନ୍ଧୀ-ଲେନିନ୍ ୟୁଥ୍ କ୍ଲବ୍ | ପଙ୍କଜ କୁମାର ସାହୁ | ବାଙ୍ଗୋର, ପଢ଼ୀଆରପାଲି |
| ୬ । ଫାଇଭ୍ ଷ୍ଟାର କ୍ଲବ୍ | ଅମୂଲ୍ୟ କୁମାର ପଣ୍ଡା | ଡଅଁର |
| ୭ । ସପ୍ତଭଗ୍ନୀ ଯୁବକ ସଂଘ | ନାରାୟଣ ମହାନ୍ତି | ଗେଡ଼ମା, ଶାଳମାଆ |
| ୮ । ବିଶ୍ୱଜ୍ୟୋତି କ୍ଲବ୍ | ଅକ୍ଷୟ କୁମାର ରାଉତ | ହରିବଲେଶ୍ୱର |
| ୯ । ଆଞ୍ଚଳିକ ସରସ୍ୱତୀ ୟୁଥ୍ କ୍ଲବ | ନରେନ୍ଦ୍ର କୁମାର ପରିଡ଼ା | ହାଟଡିହ, ମରେଇ ଗାଁ |
| ୧୦ । ଗଡ଼ଚଣ୍ଡୀ ଯୁବ ପରିଷଦ | ଅଲେଖ ଚନ୍ଦ୍ର ଦାସ | କମ୍ପୀର, ସଡା, ପନ୍ଦାଡ଼ୋ |
| ୧୧ । ବାପୁଜୀ ବାଲାଶ୍ରମ | ଆନନ୍ଦ ଚନ୍ଦ୍ର ମଲିକ | କଳଗାଁ, ଓରାଳୀ |
| ୧୨ । ଆଞ୍ଚଳିକ ହରିଜନ ଆଦିବାସୀ ବିକାଶ ପରିଷଦ | ବାସୁଦେବ ଦାସ | ସଡଙ୍ଗ |
| ୧୩ । ବିବେକାନନ୍ଦ ଯୁବକ ସଂଘ | କେଦାରନାଥ ରାଉତ | ସମଣା |
| ୧୪ । ସେନା | ଅନ୍ତର୍ଯ୍ୟାମୀ ରାଉତ | ସୋରୋ |

## ଝୁମ୍ପୁରା ବ୍ଲକ୍

| | | |
|---|---|---|
| ୧ । ସତ୍ୟନାରାୟଣ ଯୁବକ ସଂଘ | ପଞ୍ଚାନନ ମହାନ୍ତି | ଅର୍ଣ୍ଣଳା, ଝୁମ୍ପୁରା, ଖୁଣ୍ଟାପଡ଼ା |
| ୨ । ମା' ତାରିଣୀ କ୍ଲବ୍ | ଅନାଦି ଚରଣ ଗିରି | ଅସନପାଟ |
| ୩ । I.R.D.A. | ସ୍ୱଗବ୍ରତ ନାୟକ | ହରିଶ୍ଚୁଣ୍ଡା, ବଡ଼ ଡୁମୁରିଆ |
| ୪ । I.R.D.C.W | ପଦ୍ମଚରଣ ପରିଡ଼ା | ବଡ଼ନେଉଳୀ |
| ୫ । ନେତାଜୀ ଯୁବସେବା ସଂଘ | ସତ୍ୟାନନ୍ଦ ପାଢ଼ୀ | ମାଲଦା, ବାଲିବନ୍ଧ, ନୃସିଂହପୁର |

| | | |
|---|---|---|
| ୬ । ପ୍ରଗତି କ୍ଲବ୍ | ଚନ୍ଦ୍ରସେନ ସିଂ | ବାରିଆ |
| ୭ । ଆଦିବାସୀ କଲ୍ୟାଣ ସମିତି | ତୁଳସୀ ମୁଣ୍ଡା | ବସନ୍ତପୁର |
| ୮ । ବୀଣାପାଣି ଯୁବକ ସଂଘ | ଅନାଦି ଚରଣ ମହାନ୍ତ | ଚଢଠିଆ |
| ୯ । GRACE | ଅଶୋକ କୁମାର ମହାନ୍ତ | ଗୁମୁରା |
| ୧୦ । ଶ୍ରୀ ଜଗନ୍ନାଥ ୟୁଥ୍ କ୍ଲବ | ପ୍ରସନ୍ନ କୁମାର ପ୍ରଧାନ | କୁଟୁଗାଁ, ନନ୍ଦବେଡ଼ା |
| ୧୧ । ସୁବାସ ବୋଷ୍ କ୍ଲବ୍ | ଗୁରୁଚରଣ ମହାନ୍ତ | ଟୁକୁଡ଼ିହା |

## ଯୋଡ଼ା ବ୍ଲକ୍

| | | |
|---|---|---|
| ୧ । ସୁପର ଷ୍ଟାର କ୍ଲବ୍ | ଅନନ୍ତ ଚରଣ ବେହେରା | ଅଂଶେଇକଳା, କଣ୍ଡରା, ବଳାଣି |
| ୨ । ଜୟ ଜଗନ୍ନାଥ ଫ୍ରେଣ୍ଡସ୍ କ୍ଲବ୍ | କିଶୋର ନାୟକ | ବଲଡ଼ା |
| ୩ । ସତ୍ୟସାଇ ଯୁବକ ସଂଘ | ଶ୍ୟାମସୁନ୍ଦର ଖିଲର | ବାଲଗୋଡ଼ା |
| ୪ । ରାଣାପ୍ରତାପ ଯୁବକ ସଂଘ | ତ୍ରିଲୋଚନ ପଲେଇ | ଦେଓଝର, ବଶକଳା, ଭୁଷ୍ଟାଁ ରଇଡା, ବଡ଼ବିଲ ମ୍ୟୁନିସପାଲିଟି |
| ୫ । ଆଦିବାସୀ ବିକାଶ ସମିତି | ତୁଳସୀ ମୁଣ୍ଡା | ଭଦ୍ରାସାହି, ଗୁଆଲି |
| ୬ । ନେତାଜୀ ଫରୱାର୍ଡ କ୍ଲବ୍ | ପ୍ରତାପ ଚନ୍ଦ୍ର ମହାନ୍ତ | ଚମକପୁର |
| ୭ । ବ୍ରାଇଟ୍ ଡାଇମଣ୍ଡ ୟଙ୍ଗ୍ ମେନସ୍ ଆସୋସିଏସନ୍ | ନରେନ୍ଦ୍ର କୁମାର ହାଁସଦା | ଜଜାଙ୍ଗ |
| ୮ । ଶ୍ରୀ ରାମଶକ୍ତି ୟୁଥ୍ କ୍ଲବ୍ | ସନ୍ତୋଷ କୁମାର ମହାକୁଡ଼ | ପଲସା |
| ୯ । ଭିନ୍ନଦର୍ଶୀ | ରଙ୍ଗାଧର ପାତ୍ର | ଯୋଡ଼ା ମ୍ୟୁନିସିପାଲିଟି |

## କେନ୍ଦୁଝର ବ୍ଲକ୍

| | | |
|---|---|---|
| ୧। ସମାଜ ସେବା ସମିତି | ଜଗୁକାର ସାହୁ | ବରଦାପାଳ, ନୂଆଗାଁ |
| ୨। ଶାନ୍ତ ଯୁବକ ସଂଘ | ଘନଶ୍ୟାମ ମହାନ୍ତ | ବାଉଁଶପଦା, ଶଙ୍କର, ଗୋବର୍ଦ୍ଧନ |
| ୩। ରେଣ୍ଟାଲ ଭିଲେଜ୍ କର୍ପସ୍ | ଶରତ ଚନ୍ଦ୍ର ସିଂ | ବୁଢାପଲଶା |
| ୪। ଜନକଲ୍ୟାଣ ସଂସ୍ଥା | ଆଶିଷ କୁମାର ସାହୁ | ଡିମ୍ବୋ |
| ୫। ଗୋପବନ୍ଧୁ ଯୁବକ ସଂଘ | ବସନ୍ତ କୁମାର ଘଣା | ହାଣ୍ଡିଭଙ୍ଗା |
| ୬। ଜନକଲ୍ୟାଣ ଯୁବକ ସଂଘ | ନାଥ ବେହେରା | କଣ୍ଡରାପଶି, ପଙ୍କଜପୁର |
| ୭। ଲାଇଫ୍ ଲାଇନ୍ ସ୍ୱେଚ୍ଛାସେବୀ ସଂସ୍ଥା | ଚନ୍ଦ୍ରକାନ୍ତ ବରାଳ | କାଠବାଣି |
| ୮। ନବଜୀବନ ଯୁଥ କ୍ଲବ୍ | ବେଙ୍କଟେଶ୍ୱ ମହାନ୍ତ | କାଉଁରିକଲା |
| ୯। ମଇଦାନ୍ କେଲ୍ ଯୁବକ ସଂଘ | ପୂର୍ଣ୍ଣଚନ୍ଦ୍ର ମହାନ୍ତ | ମଇଦାନ୍ କେଲ୍ |
| ୧୦। ଗ୍ରାମବିକାଶ ପରିଚାଳନା ପରିଷଦ | ଲକ୍ଷ୍ମୀଧର ଜେନା | ନରସପୁର, ମହାଦେଇ ଯୋଡ଼ା |
| ୧୧। ସତ୍ସଙ୍ଗ ସେବା ସୋସାଇଟି | ସୁରେଶ ଚନ୍ଦ୍ର ଦାସ | ଶିଶୁପାଳ, ମଣ୍ଡୁଆ, କେନ୍ଦୁଝର ମ୍ୟୁନିସିପାଲିଟି (୧) |
| ୧୨। ଆଇଡିଆଲ୍ ଡେଭେଲପ୍‌ମେଣ୍ଟ ଏଜେନ୍ସି | ସେବତି ସିଂ | ପଦ୍ମପୁର |
| ୧୩। HEDA | ଚିତ୍ତରଞ୍ଜନ ଗିରି | ପଳାଶପଙ୍ଗା |
| ୧୪। ଶାନ୍ତିନିକେତନ କ୍ଲବ୍ | କୃଷ୍ଣଚନ୍ଦ୍ର ମହାନ୍ତ | ରଘୁନାଥପୁର |
| ୧୫। ଯୁବଜ୍ୟୋତି କ୍ଲବ୍ | ତରଣୀସେନ ମହାନ୍ତ | ରାଇକଳା |
| ୧୬। ରାଇସୁଆଁ ଯୁବକ ସଂଘ | ମନୋରଞ୍ଜନ ରାଉତ | ରାଇସୁଆଁ |
| ୧୭। ପ୍ରକଳ୍ପ | ବିପ୍ଳବ ମିଶ୍ର | କେନ୍ଦୁଝର ଗଡ଼ ମ୍ୟୁନିସିପାଲିଟି |

## ସାହାରପଡ଼ା ବ୍ଲକ୍

| | | |
|---|---|---|
| ୧। ଜୟଦୁର୍ଗା ଯୁବକ ସଂଘ | ମକୁନ୍ଦ ମହାନ୍ତ | ବଡ଼ବଲ, ବାଇବଲା |
| ୨। ଜନସେବା ଯୁବକ ସଂଘ | ଦ୍ରୋଣ ମହାନ୍ତ | ଜମାହୁଡା, ଖଡ଼କାପଦା |
| ୩। ବରିପଣି ଯୁବକ ସଂଘ | ହୃଷୀକେଶ ମହାନ୍ତ | ସାହାରପଡ଼ା, ବରିପଣି |
| ୪। ନବଯୁବ ସଂଗଠନ | ପ୍ରଦୀପ୍ତ କୁମାର ଦାସ | ମାଛଗଡ଼, ଗୋବ୍ରସ |
| ୫। ମା' ଅମ୍ବିକା ଯୁବକ ସଂଘ | ସୁବାସ ଚନ୍ଦ୍ର ଆରୁକ | ମଲାରପଦା, ଖଜୁରୀପାଟ, ଚେଣ୍ଡ୍ରା। |
| ୬। ଉତ୍କଳ ଜନମଙ୍ଗଳ ସେବା କେନ୍ଦ୍ର | ବନମାଳି ନାୟକ | ଗୁଇଡ଼ିହା |
| ୭। T R D S S O | ଗୌରଚନ୍ଦ୍ର ମହାନ୍ତ | ସିଳପଦା, ଉଦୟପୁର |

## ସ୍ୱାମପାଟଣା ବ୍ଲକ୍

| | | |
|---|---|---|
| ୧। ମୁକ୍ତତୀର୍ଥ କ୍ଲବ୍ | ଅଲେଖ ତ୍ରିପାଠୀ | ବଡ଼ ପାଟଣା |
| ୨। O R I S S A | ଶିବପ୍ରସାଦ ପଣ୍ଡା | 'ବାଉଁଶୁଳୀ, ଖିରେଇଟାଙ୍ଗିରି |
| ୩। ନେତାଜୀ କ୍ଲବ୍ | ଅଯୋଧ୍ୟା ମହାକୁଡ଼ | ଭୁରୁମୁଙ୍ଗା, ବୁଢ଼ିକାପୁଟ |
| ୪। ମଇଦାନ ଖେଳ୍ ଯୁବକ ସଂଘ | ପୂର୍ଣ୍ଣଚନ୍ଦ୍ର ମହାନ୍ତ | ସୁକୁଣ୍ଡାପାଳ |
| ୫। ବଶୋଇ ପାଟ୍ ୟୁଥ୍ କ୍ଲବ୍ | ଚରଣୀସେନ ନାୟକ | ଗୁଜନଗର, ଚେମଣା |
| ୬। V A R R A T | ଉଦୟନାଥ ବେହେରା | ତନାମାଳପଣି, ଏରେଣ୍ଡେଇ, ଡୁମୁରିଆ, ମିରିଗିଖୋଜ |
| ୭। ଜୀବନ ଦୀପ | ମନୋରଞ୍ଜନ ନାୟକ | ଯମୁନାପଣି |
| ୮। ହାଣାପାଣି ୟୁଥ୍ କ୍ଲବ୍ | ଧନଞ୍ଜୟ ମହାନ୍ତ | କଣ୍ଡିଆପଡ଼ା |
| ୯। ବଶୋଇପାଟ୍ ଯୁବକ ସଂଘ | ଲୋକନାଥ ନାୟକ | କେନ୍ଦେଇପଣି |
| ୧୦। ବୈଟାଣୀ ଭିଲେଜ୍ କର୍ପସ୍ | ଅଶ୍ୱିନୀ କୁମାର ସାହୁ | ମୁରୁସୁଁଆ |

| | | |
|---|---|---|
| ୧୧ । S A R P | ମହେଶ୍ୱର ସାହୁ | ମୁଷାଖୋଷ୍ପ |
| ୧୨ । ଝାଙ୍ଗରପଡ଼ା ଯୁବକ ସଂଘ | ବିନୋଦ ଚନ୍ଦ୍ର ପୃଷ୍ଟି | ଝାଙ୍ଗରପଡ଼ା |

## ତେଲକୋଇ ବ୍ଲକ୍

| | | |
|---|---|---|
| ୧ । ଗୋପବନ୍ଧୁ ଯୁବକ ସଂଘ | ପଦ୍ମଚରଣ ନାୟକ | ଆକୁଳ, ପଡ଼ାଂଗ |
| ୨ । ରମାଦେବୀ ଗ୍ରାମ ଉନ୍ନତ ସଂଗଠନ | ସଚ୍ଚୀବାଳା ପଣ୍ଡା | ବଳଭଦ୍ରପୁର, ପୁରୁକୁଡ଼ା କରମଙ୍ଗୀ |
| ୩ । W O R D | ପ୍ରମିଳା ପଣ୍ଡା | ହ୍ରୀମକାଣ୍ଡ |
| ୪ । ଆଜାଦ୍ ହିନ୍ଦ୍ ଫୌଜ ଯୁବକ ସଂଘ | ଲକ୍ଷ୍ମଣ କୁମାର ନାୟକ | ନିମଳା |
| ୫ । ରାଧାକୃଷ୍ଣ କ୍ଲବ୍ | ଶରତ ଚନ୍ଦ୍ର ମାଝୀ | ବଞ୍ଚିବାହାଲ, ଗ୍ରମୁଣ୍ଡା |
| ୬ । କସ୍ତୁରୀ | ରବି ମହାରଣା | ଦେଉଳଡିହା, ଉଶଆ |
| ୭ । ବନବାସୀ ବିକାଶ ସଂଗଠନ | ପ୍ରଭାତ କୁସୁମ ପଟ୍ଟନାୟକ | ଜଗମୋହନ ପୁର, ସଲେଇକେନା |
| ୮ । ଉଦ୍ଧାର | ଦ୍ୱାରକା ପ୍ରସାଦ ରଥ | କାଳିଆହତା |
| ୯ । ବାପୁଜୀ ଯୁବକ ସଂଘ | ବାଇଧର ସାହୁ | ନରଦାଂଗୀ |
| ୧୦ । V O R A S A | ଚରଣୀସେନ ସାହୁ | ଝୁଣ୍ଟାପଡ଼ା |
| ୧୧ । V O R I | ନରୋତ୍ତମ ମହାକୁଡ଼ | ଶିବନାରାୟଣପୁର ଗୋଡ଼, ଚାଳପଦା |
| ୧୨ । ଆଦିବାସୀ ହରିଜନ କ୍ଲବ୍ | ଶୁକଦେବ ଦେହୁରୀ | ଶିରଗିଡ଼ା |

(ସୂଚନା—ଏହି ତାଲିକାଟି ସମସ୍ତଙ୍କ ପାଇଁ ଶିକ୍ଷା ପ୍ରକଳ୍ପ ସୌଜନ୍ୟରୁ ପ୍ରାପ୍ତ ।)

# କେନ୍ଦୁଝରରେ ନବୋଦୟ ବିଦ୍ୟାଳୟ

ଓଡ଼ିଶାର ପୁରାତନ ତେରଗୋଟି ଜିଲ୍ଲାରେ ୧୯୮୭ ମସିହାରେ ଜବାହର ନବୋଦୟ ବିଦ୍ୟାଳୟ ପ୍ରତିଷ୍ଠା ହୋଇଛି । କେନ୍ଦୁଝର ଜିଲ୍ଲାର ହାଟଗଡ଼ଠାରେ ଥିବା ଜଳସେଚନ ବିଭାଗ କଲୋନୀରେ ଏହି ଆବାସିକ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି । ତତ୍କାଳୀନ ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେ ଏହି ବିଦ୍ୟାଳୟକୁ ନଭେମ୍ବର ମାସ ୧୭ ତାରିଖ ୧୯୮୭ ମସିହାରେ ଉଦ୍‌ଘାଟନ କରିଥିଲେ । ଏହି ବିଦ୍ୟାଳୟରେ ୬ଷ୍ଠ ଶ୍ରେଣୀରୁ ଯୁକ୍ତ ଦୁଇ ପର୍ଯ୍ୟନ୍ତ ମେଧାବୀ ୪୬୦ ଜଣ ଛାତ୍ରଛାତ୍ରୀମାନଙ୍କୁ ସ୍ୱତନ୍ତ୍ର ଭାବେ ଶିକ୍ଷାଦାନ କରାଯାଉଛି । ଏଠାରେ ୪୩୦ ଜଣ ଛାତ୍ରଛାତ୍ରୀ, ୨୫ ଜଣ ଅଧ୍ୟାପକ, ୧୫ ଜଣ ଅଣଶିକ୍ଷକ କର୍ମଚାରୀ ଅଛନ୍ତି । ସେମାନଙ୍କ ପାଇଁ ସମ୍ପ୍ରତି ସ୍ୱତନ୍ତ୍ର ବାସଗୃହ ଓ ନୂତନ ବିଦ୍ୟାଳୟଗୃହ ତଥା ହଷ୍ଟେଲଗୃହ ନିର୍ମାଣ କରାଯାଇଛି । ମୁଖ୍ୟତଃ କେନ୍ଦୁଝରର ଗରିବ ମେଧାବୀ ତଥା ଗ୍ରାମାଞ୍ଚଳର ପିଲାମାନଙ୍କୁ ଏହି ବିଦ୍ୟାଳୟରେ ଶିକ୍ଷାଲାଭର ସୁଯୋଗ ମିଳିଥାଏ । ଏଥିପାଇଁ ପ୍ରତିବର୍ଷ ଅକ୍ଟୋବର-ନଭେମ୍ବର ମାସରେ ଏକ ପ୍ରତିଯୋଗିତା କରାଯାଇ ମେଧାବୀ ପିଲାଙ୍କୁ ନିର୍ବାଚିତ କରାଯାଏ । ସମ୍ପ୍ରତି ନୂତନ ବୃହତ୍ ବିଦ୍ୟାଳୟ ଗୃହ ନିର୍ମାଣ କାର୍ଯ୍ୟ ମଧ୍ୟ ଶେଷ ହୋଇଛି ।



# କେନ୍ଦୁଝରରେ ସରକାରୀ ପ୍ରେସ୍

କେନ୍ଦୁଝରର ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ପରିସର ମଧ୍ୟରେ ଓଡ଼ିଶା ସରକାରଙ୍କର ଏକ ଶାଖା ମୁଦ୍ରଣାଳୟ ଅବସ୍ଥିତ । ଏଠାରେ ସରକାରୀ ଫର୍ମ, ରସିଦ ଓ ଆନୁଷଙ୍ଗିକ ନଥିପତ୍ର ଛପାଯାଇ ମୁଖ୍ୟତଃ କେନ୍ଦୁଝର, ମୟୂରଭଞ୍ଜ ଓ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ସରକାରୀ କାର୍ଯ୍ୟାଳୟକୁ ଯୋଗାଇ ଦିଆଯାଇଥାଏ । ମୁଖ୍ୟତଃ ତହସିଲ୍ କାର୍ଯ୍ୟାଳୟ-ଗୁଡ଼ିକୁ ଖଜଣା ରସିଦ ଓ ଧାତବ ବସ୍ତୁ ଗମନାଗମନ ପାଇଁ ପାସ୍ ଏଠାରେ ଛପାଯାଇ

ଯୋଗାଇ ଦିଆଯାଏ । ଏଠାରେ ପ୍ରାୟ ୪୦ ଜଣ କର୍ମଚାରୀ ଅଛନ୍ତି ଏବଂ ଆନୁଷଙ୍ଗିକ ମୁଦ୍ରଣ ଯନ୍ତ୍ର ଉପଲବ୍ଧ ।

ଏଠାରୁ ପ୍ରକାଶିତ ପିଅନ ବୁକ୍ ଓ ବିଭିନ୍ନ ଫର୍ମ ମୁଦ୍ରଣ କରାଯାଇ କଟକସ୍ଥ ସରକାରୀ ମୁଖ୍ୟ ମୁଦ୍ରଣାଳୟକୁ ଯୋଗାଇ ଦିଆଯାଏ, ଯାହାକି ଓଡ଼ିଶାର ବିଭିନ୍ନ କାର୍ଯ୍ୟାଳୟକୁ ପଠାଯାଏ ।

ରାଜ୍ୟ ବିଧାନସଭାର ବିବରଣୀ ମଧ୍ୟ ଏହି ପ୍ରେସରେ ପ୍ରକାଶିତ ହୋଇ କଟକସ୍ଥ ମୁଖ୍ୟ ଦପ୍ତର ମାଧ୍ୟମରେ ବିଧାନସଭାକୁ ଯୋଗାଇ ଦିଆଯାଏ ।



# ସ୍ୱାଧୀନତା ସଂଗ୍ରାମରେ କେନ୍ଦୁଝର

ଇତିହାସ ହେଉଛି—ଅତୀତର ଦର୍ପଣ । ସେ ଦର୍ପଣରେ ନିଜ ମୁଖମଣ୍ଡଳକୁ କେହି ଦେଖିପାରନ୍ତି ନାହିଁ । ପରବର୍ତ୍ତୀ କାଳରେ ଉତ୍ତରାଧିକାରୀମାନେ ତାଙ୍କର ପୂର୍ବପୁରୁଷଙ୍କର ତ୍ୟାଗ, ନିଷ୍ଠା, ଦେଶପ୍ରୀତି ଏବଂ ପରୋପକାର ଭଳି ମହତପଣିଆକୁ ମଥାରେ ଥୋଇ ଗର୍ବ ଅନୁଭବ କରନ୍ତି । ସେହିପରି ସ୍ୱାର୍ଥପର, ନିଷ୍ଠୁର, ଅହଂକାରୀ, ଅବିବେକୀ, ଦେଶଦ୍ରୋହୀମାନଙ୍କର କୁତ୍ସିତ ରୂପକୁ ଅତୀତର ଦର୍ପଣରେ ଦେଖି ଉତ୍ତରାଧିକାରୀମାନେ ତାଙ୍କୁ ଘୃଣା କରିବାକୁ ବାଧ୍ୟ ହୋଇଥାଆନ୍ତି । ଭାରତର ସ୍ୱାଧୀନତା ଆନ୍ଦୋଳନର ଅସଂଖ୍ୟ ଘଟଣା ସହିତ ଜଡ଼ିତ ଥିବା ସଂଗ୍ରାମୀମାନଙ୍କର ତ୍ୟାଗ, ନିଷ୍ଠା ଆଉ ଦେଶପ୍ରେମକୁ ଇତିହାସ ଉପେକ୍ଷା କରିପାରିନାହିଁ । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ବଣ-ଜଙ୍ଗଲଘେରା ଅନୁନ୍ନତ ଅଞ୍ଚଳ କେନ୍ଦୁଝର ଜିଲ୍ଲାର ଭୂମିକା ବର୍ଣ୍ଣ୍ୟ ।

ଇଂରେଜ ସରକାରଙ୍କ ବିରୋଧରେ ପ୍ରତ୍ୟକ୍ଷ ଆନ୍ଦୋଳନ ପୂର୍ବରୁ ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜ୍ୟମାନଙ୍କରେ ଯେଉଁସବୁ ବିଦ୍ରୋହ ଦେଖାଦେଇଥିଲା, ତାହା ଯଦିଓ ସେ ରାଜ୍ୟର ରାଜା ଓ ଜମିଦାରମାନଙ୍କ ବିରୋଧରେ ଥିଲା, ତଥାପି ପରୋକ୍ଷ ଭାବରେ ଗୋରା ଶାସକମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ପରବର୍ତ୍ତୀ କାଳରେ ସେହି ବିଦ୍ରୋହ ଜାତୀୟ ଆନ୍ଦୋଳନରେ ପରିଣତ ହୋଇଥିଲା ।

ଦେଶୀୟ ରାଜ୍ୟ ଓ ଗଡ଼ଜାତ ରାଜ୍ୟର ପ୍ରଜାମାନଙ୍କର ଅଶାନ୍ତି, ବିଦ୍ରୋହ ଏବଂ ପ୍ରଜାମେଳ ମାଧ୍ୟମରେ ଯେଉଁ ଆନ୍ଦୋଳନ ସୃଷ୍ଟି ହୋଇଥିଲା, ତାର ଅଂଶବିଶେଷ ଥିଲା—କେନ୍ଦୁଝରର ରତ୍ନାମେଳି ଓ ଧରଣୀମେଳି। ଅର୍ଥନୈତିକ ଏବଂ ରାଜନୈତିକ ଅଧିକାରକୁ କେନ୍ଦ୍ରକରି ଏହି ପ୍ରଜାମେଳ ଦୁଇଟି ସଂଗଠିତ ହୋଇଥିଲା। କେନ୍ଦୁଝରର ରାଜକୁଳୀ ଓ ପାହାଡ଼ି ଭୂୟାଁ ସମ୍ପ୍ରଦାୟର ପ୍ରଜାମାନଙ୍କୁ ନେଇ ଧରଣୀଧର ବିଦ୍ରୋହ ସୃଷ୍ଟି କରିଥିଲେ। ଲଢ଼ୁଆ ଭୂୟାଁମାନେ ପରିବର୍ତ୍ତନଶୀଳ ରାଜାଙ୍କ ଶାସନ ବିରୋଧରେ ସ୍ୱର-ଉତ୍ତୋଳନ କରିଥିଲେ । ବ୍ରିଟିଶ ଅଧିକାରୀ H. P. Wally କେନ୍ଦୁଝର ଦାୟିତ୍ୱରେ ଥିବା ସମୟରେ ବିପ୍ଳବୀ ଧରଣୀଙ୍କୁ ରାଜଦ୍ରୋହ ଅପରାଧରେ ସାତବର୍ଷ ସଶ୍ରମ କାରାଦଣ୍ଡ ମିଳିଥିଲା। Wally ବହୁ କଷ୍ଟ ସ୍ୱୀକାର କରି ପ୍ରଜାମେଳକୁ ଦମନ କରିଥିଲେ । ଶହ ଶହ ବିଦ୍ରୋହୀ ଧରାପଡ଼ି ଦଣ୍ଡିତ ହେଲେ । ଏହି ବିଦ୍ରୋହର ପରିସମାପ୍ତି ଘଟିଲା—ଅନ୍ୟ ଆନ୍ଦୋଳନର କରୁଣ ସମାପ୍ତି ପରି; କିନ୍ତୁ ବିଦ୍ରୋହୀମାନେ ଏ' କଥାର କାନରେ କହିଦେଇଗଲେ—"ଏ' ଅନ୍ୟାୟ ଶାସନ ଏବଂ ଇଂରେଜ କମ୍ପାନୀର ଅତ୍ୟାଚାର ବେଶୀ ଦିନ ତିଷ୍ଠି ରହିପାରିବ ନାହିଁ।"

ଏହି ଧରଣୀମେଳି ଘଟଣା ପରେ ରାଜାଙ୍କ ମନରେ ବିରାଟ ପରିବର୍ତ୍ତନ ଆସିଥିଲା। ସେ ପ୍ରଜାମାନଙ୍କର ଉନ୍ନତିବିଧାନ ନିମନ୍ତେ ଅନେକଗୁଡ଼ିଏ ଲୋକହିତକର କାର୍ଯ୍ୟ ହାତକୁ ନେଇଥିଲେ। ମୋଟାମୋଟି ଭାବେ ଏତିକି ସ୍ୱୀକାର କରାଯାଏ ଯେ —ଧରଣୀମେଳି କେନ୍ଦୁଝର ଇତିହାସର ଗତି ପରିବର୍ତ୍ତନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା।

ଧରଣୀମେଳି ପୂର୍ବରୁ ୧୮୬୮ ମସିହାରେ ସଙ୍ଗଠିତ 'ରତ୍ନା ବିଦ୍ରୋହ' ମଧ୍ୟ କେନ୍ଦୁଝର ରାଜ୍ୟ ତଥା ଇଂରେଜ ସରକାରଙ୍କୁ ବ୍ୟତିବ୍ୟସ୍ତ କରିଦେଇଥିଲା। ଏହାର ନେତୃତ୍ୱ ନେଇଥିଲେ—ରତ୍ନା ନାଏକ ଏବଂ ନନ୍ଦ ନାଏକ। ଅସଂଖ୍ୟ ବିଦ୍ରୋହୀ ଭୂୟାଁ ତାଙ୍କ ପଛରେ ଥିଲେ। ସ୍ଥାନୀୟ ଜୁଆଙ୍ଗ ସମ୍ପ୍ରଦାୟ ଓ ମୁଣ୍ଡା, କୋହ୍ଲ ସମ୍ପ୍ରଦାୟର ଅଧିବାସୀମାନେ ମଧ୍ୟ ଏହି ବିଦ୍ରୋହକୁ ସମର୍ଥନ କରିଥିଲେ । ପ୍ରକାରାନ୍ତରେ ଏହି ବିଦ୍ରୋହ ଥିଲା—କେନ୍ଦୁଝରବାସୀ ଓ ଇଂରେଜ ସରକାରଙ୍କ ମଧ୍ୟରେ ଏକ ଯୁଦ୍ଧ।

ଇଂରେଜ ସରକାରଙ୍କ ଅନ୍ୟାୟ ବିରୋଧରେ ସଙ୍ଗଠିତ ଏହି ବିଦ୍ରୋହକୁ କର୍ଣ୍ଣେଲ୍ ଡାଲଟନ୍ ଦୃଢ଼ହସ୍ତରେ ଦମନ କଲେ । 'ରତ୍ନା ନାଏକ ଓ ଅନ୍ୟ ଛଅଜଣଙ୍କୁ ଦେଓ୍ୱାନ-ହତ୍ୟା ଅପରାଧରେ ଫାଶୀଦଣ୍ଡ ମିଳିଲା। ଅନ୍ୟ ପ୍ରାୟ ଶହେ-ଜଣଙ୍କୁ ଆଜୀବନ କାରାଦଣ୍ଡ ମିଳିଲା । ଏହି ରତ୍ନା ବିଦ୍ରୋହ ଦମନ ଇଂରେଜ ସରକାରଙ୍କ ପାଇଁ ଥିଲା—ଏକ ଗୁରୁତ୍ୱପୂର୍ଣ୍ଣ ବିଜୟ। କାରଣ ଏହି ବିଦ୍ରୋହ ଇଂରେଜ ସରକାରଙ୍କ ଶାସନର ମୂଳଭିତ୍ତିକୁ ଦିନେ ଦୋହଲାଇ ଦେଇପାରିଥିଲା।

ରତ୍ନା ବିଦ୍ରୋହ ଏବଂ ଧରଣୀମେଳି ଭଳି ଦୁଇଟି ମହତ୍ତ୍ୱପୂର୍ଣ୍ଣ ଗଣ ଆନ୍ଦୋଳନ ମାଧ୍ୟମରେ କେନ୍ଦୁଝରବାସୀ ସଂଗ୍ରାମର ସ୍ୱାଦ ବାରି ସାରିଥିଲେ । ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ ଓ ଇଂରେଜ ସରକାରକୁ ବହିଷ୍କାର କାର୍ଯ୍ୟରେ ଆଗେଇ ଯିବାକୁ ସେମାନେ ମାର୍ଗଦର୍ଶନ ସୁଯୋଗ ଏବଂ ନେତୃତ୍ୱର ଅପେକ୍ଷାରେ ରହିଥିଲେ ।

୧୯୨୦ ମସିହାରେ ସେହି ସୁଯୋଗ ଆସି ଉପସ୍ଥିତ ହେଲା । ସମଗ୍ର ଭାରତରେ ସ୍ୱାଧୀନତା ସଂଗ୍ରାମର ଅଗ୍ନିଶିଖା ଜଳି ଉଠିଲା । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଏହି ସଂଗ୍ରାମର ପଦଧ୍ୱନି ଓଡ଼ିଶା ମାଟିରେ ମଧ୍ୟ ପ୍ରତିଧ୍ୱନିତ ହେଲା । କେନ୍ଦୁଝରବାସୀ ଚେଇଁ ଉଠିଲେ ସେହି ପ୍ରତିଧ୍ୱନିରେ ।

୧୯୨୦ ମସିହା ଡିସେମ୍ବର ମାସରେ କେନ୍ଦୁଝର ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମର ଅଶ୍ୱମାରମ୍ଭ ହେଲା । ଗଡ଼ଜାତ ରାଜ୍ୟସମୂହର ମୁକ୍ତିନ୍ୟୂନ ମେଣ୍ଟକୁ ସମର୍ଥନ କରାଯାଇ ଏଠାରେ ସଂଗଠିତ ହେଲା ଏକ ଭୟଙ୍କର ଗଣ ଜାଗରଣ । ଫଳରେ ସ୍ଥାନୀୟ ରାଜାଙ୍କ ସହାୟତାରେ ଇଂରେଜ ସରକାର ଆନ୍ଦୋଳନକାରୀମାନଙ୍କୁ ଗିରଫ କରୁଥିଲେ ।

ସେତେବେଳକୁ କେନ୍ଦୁଝରର ରାଜା ନିଜ ଦାୟିତ୍ୱରୁ ଓହରି ଯାଇଥାନ୍ତି । କେନ୍ଦୁଝରଗଡ଼ର ସର୍ବୋଚ୍ଚ କର୍ତ୍ତାଭାବେ ଇଂରେଜ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଜେ. ଏଚ୍. ପ୍ରାଇସ୍ ଦାୟିତ୍ୱ ଗ୍ରହଣ କରିଥାନ୍ତି । ସେ ସ୍ୱଭାବତଃ ବଡ଼ ନିଷ୍ଠୁର ଥିଲେ । ନ୍ୟାୟ ଅନ୍ୟାୟ ତାଙ୍କ ପାଇଁ ସମାନ ଥିଲା । ତାଙ୍କ ବିଚାରରେ ପ୍ରଜାମାନେ ନ୍ୟାୟ ପାଇପାରୁ ନଥିବାରୁ ତାଙ୍କୁ ସମସ୍ତେ ବାଘୁଆସାହେବ ଭାବରେ ଜାଣିଥିଲେ । ତାଙ୍କର ନିର୍ମମ ବ୍ୟବହାରରେ ପ୍ରଜାମଣ୍ଡଳୀ ଅତିଷ୍ଠ ହୋଇପଡ଼ିଥିଲେ । ତାଙ୍କରି ଶାସନ କାଳରେ ପୁଣି କେନ୍ଦୁଝରର ସ୍ୱାଧୀନତା ସଂଗ୍ରାମ, ଅସହଯୋଗ ଆନ୍ଦୋଳନର ସୂତ୍ରପାତ ଘଟିଲା ।

ପଣ୍ଡିତ ଗୋପବନ୍ଧୁ ଦାସଙ୍କର ପ୍ରିୟ ଗୁରୁ ତଥା ସତ୍ୟବାଦୀ ବନବିଦ୍ୟାଳୟରୁ ଶିକ୍ଷାପ୍ରାପ୍ତ ସଂଗ୍ରାମୀ ବଂଶୀଧର ବେହେରା ଓ ଦାଶରଥୀ ପଣ୍ଡା ଏହି ଅସହଯୋଗ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । କେନ୍ଦୁଝରଗଡ଼ର ଶିବନାରାୟଣପୁର ସାହିର ସଂଗ୍ରାମୀ ଜଗବନ୍ଧୁ ଚକ୍ରବର୍ତ୍ତୀଙ୍କ ନେତୃତ୍ୱରେ ଆଉ କେତେକ ଯୁବକ ଶପଥ ନେଇ ଅସହଯୋଗ ଆନ୍ଦୋଳନରେ ଅଂଶଗ୍ରହଣ କଲେ । ସେମାନେ ଗ୍ରାମେ ଗ୍ରାମେ ବୁଲି ଇଂରେଜ ସରକାରଙ୍କ ଅନ୍ୟାୟ, ଅତ୍ୟାଚାର ଏବଂ ଶୋଷଣ ନୀତି ବିଷୟରେ ଲୋକ-ମାନଙ୍କୁ ସଚେତନ କରାଇଲେ ।

୧୯୨୧ ମସିହା ମାର୍ଚ୍ଚ ମାସରେ ମହାତ୍ମାଗାନ୍ଧୀ ଓଡ଼ିଶା ଆଗମନ କଲେ । ଫଳରେ ଏହି ଆନ୍ଦୋଳନ କେନ୍ଦୁଝର ସମେତ ସମଗ୍ର ରାଜ୍ୟରେ ତୀବ୍ରତର ହେବାରେ

ଲାଗିଲା । ଏହି ଉପଲକ୍ଷେ ସଂଗ୍ରାମୀମାନେ କେନ୍ଦୁଝରଗଡ଼ରେ ଏପ୍ରିଲ ୬ ତାରିଖଠାରୁ ୧୩ ତାରିଖ ପର୍ଯ୍ୟନ୍ତ ଏକ ସ୍ୱତନ୍ତ୍ର ଅସହଯୋଗ ସପ୍ତାହ ପାଳନ କରିଥିଲେ । ଏଥିରେ ସେମାନେ ଭାବପକ୍ଷ ପ୍ରସ୍ତୁତ କଲେ ।

୧୯୨୧ ମସିହା ମେ ମାସର ୧୬ ତାରିଖ ଦିନ ଗଡ଼ଜାତସମୂହର ପଲିଟିକାଲ ଏଜେଣ୍ଟମାନଙ୍କର ଏକ ସମ୍ମିଳନୀ କେନ୍ଦୁଝରଗଡ଼ଠାରେ ଅନୁଷ୍ଠିତ ହେବାର ଯୋଜନା ଥାଏ । ଇଂରେଜ ସରକାର ଏହି ସମ୍ମିଳନୀର ଆୟୋଜନ କରିଥାନ୍ତି । ଏହାକୁ ସମ୍ପୂର୍ଣ୍ଣଭାବେ ବିଫଳ କରିଦେବାକୁ, ଅର୍ଥାତ୍ ପଲିଟିକାଲ ଏଜେଣ୍ଟମାନଙ୍କ ଗସ୍ତ କାର୍ଯ୍ୟକ୍ରମକୁ ବାତିଲ କରିବା ପାଇଁ ସଂଗ୍ରାମୀମାନେ ସମସ୍ତପ୍ରକାର ଉପାୟ ଖୋଜିଲେ । ଅସହଯୋଗୀମାନଙ୍କ ହରତାଳ ଫଳରେ ଏଜେଣ୍ଟମାନଙ୍କ ଗସ୍ତ କାର୍ଯ୍ୟକ୍ରମ ବିଫଳ ହେଲା ।

ଅସହଯୋଗୀମାନଙ୍କ ଆନ୍ତରିକତା ଏବଂ କଠିନ ପରିଶ୍ରମ ଫଳରେ ପ୍ରଜାମାନେ ଇଂରେଜ ସରକାରଙ୍କ ଅନ୍ୟାୟ-ଅତ୍ୟାଚାର ସମ୍ପର୍କରେ ସଚେତନ ହୋଇପାରିଥିଲେ । ଫଳରେ ଇଂରେଜ ସରକାରଙ୍କ ପ୍ରତି ଜନ-ଅସନ୍ତୋଷ ବଢ଼ିଚାଲିଲା । କେତେକ ସରଳ ବିଶ୍ୱାସୀ, ଧର୍ମପରାୟଣ ପ୍ରଜା ମନ୍ଦିରରେ ମଙ୍ଗଳ ଆଳତି, ଉପବାସ ବ୍ରତ ପାଳନ କଲେ । ଦୋକାନ ବଜାର ସବୁ ବନ୍ଦ ହୋଇଗଲା । ଏଜେଣ୍ଟମାନଙ୍କ କ୍ୟାମ୍ପ ପରିଚାଳନା ପାଇଁ କୌଣସି ଜିନିଷ କିଣିବାକୁ ମିଳିଲା ନାହିଁ । ଏଜେଣ୍ଟମାନଙ୍କ ଗସ୍ତ କାର୍ଯ୍ୟକ୍ରମ ସଫଳ ହୋଇପାରିନଥିବାରୁ ଏଥିପାଇଁ ଇଂରେଜ ସରକାରଙ୍କ ତରଫରୁ ଅସହଯୋଗୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚାଲିଲା । ଦୋକାନୀମାନଙ୍କୁ ଜବରଦସ୍ତ କରାଗଲା ଦୋକାନ ଖୋଲିବାକୁ । ନିର୍ମମ ଭାବେ ମାଡ଼ ମଧ୍ୟ ଦିଆଗଲା । କିନ୍ତୁ ସବୁପ୍ରକାର ଚେଷ୍ଟା ସତ୍ତ୍ୱେ ଇଂରେଜ ଏଜେଣ୍ଟମାନେ କ୍ୟାମ୍ପ ପରିଚାଳନା କରିପାରିଲେ ନାହିଁ । ଏହାକୁ ଅସହଯୋଗୀମାନେ ନିଜର ବିଜୟ ମନେକଲେ ଏବଂ ନିଜର ଦୃଢ଼ତା ଏହାଦ୍ୱାରା ପ୍ରମାଣିତ କରିଦେଇଥିଲେ ।

ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ—ସଂଗ୍ରାମୀ ଜଗବନ୍ଧୁ ଚକ୍ରବର୍ତ୍ତୀ, ନନ୍ଦ ପୁହାଣ, ନିଶାକର ମିଶ୍ର, ଚେମା ମହାନ୍ତ, ମଧୁସୂଦନ ମିଶ୍ର । ଏଥିରେ ଅଂଶ-ଗ୍ରହଣ କରିଥିବା ଅସହଯୋଗୀମାନଙ୍କୁ ପ୍ରଚୁର ମାଡ଼, ବେତାଘାତ ହେବାରୁ କେତେକ ରକ୍ତବାନ୍ତି କରିଥିଲେ । ଶେଷରେ ମିଥ୍ୟାସାକ୍ଷୀ ବଳରେ କେତେକଙ୍କୁ ଜେଲ ଓ ଜୋରିମାନା ଦିଆଯାଇଥିଲା । ଜଗବନ୍ଧୁ ଚକ୍ରବର୍ତ୍ତୀ ଆନ୍ଦୋଳନର ନେତୃତ୍ୱ ନେଇ-ଥିବାରୁ ତାଙ୍କୁ ଦ୍ୱୀପାନ୍ତର ଆଦେଶ ହୋଇଥିଲା, ପରେ ସେହି ଆଦେଶ ପରିବର୍ତ୍ତେ ତାଙ୍କୁ ବାରବର୍ଷ ଜେଲଦଣ୍ଡ ଦିଆଯାଇଥିଲା । ନନ୍ଦ ପୁହାଣଙ୍କୁ ମଧ୍ୟ ବାରବର୍ଷ ଜେଲ ମିଳିଥିଲା । ଅନ୍ୟ ସଂଗ୍ରାମୀମାନଙ୍କୁ ତିନି ବର୍ଷ ଓ ଦୁଇ ବର୍ଷ ଲେଖା ଜେଲଦଣ୍ଡ

ମିଳୁଥିଲା । ଜେଲରେ ସଂଗ୍ରାମୀମାନଙ୍କୁ ରାଜବନ୍ଦୀ ଭଳି ରଖା ନ ଯାଇ ଚୋର ଡକାୟତଙ୍କୁ ରଖିଲା ଭଳି ଅସମ୍ମାନ ଓ ଅତ୍ୟାଚାର କରାଯାଉଥିଲା ।

ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ, ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ସଂଗ୍ରାମୀ ରାଜକୃଷ୍ଣ ବୋଷ ୧୯୨୧ ମସିହା ମେ ମାସ ୨୪ ତାରିଖରେ ପ୍ରଥମ ସଂଗ୍ରାମୀ ରାଜବନ୍ଦୀର ମର୍ଯ୍ୟାଦା ଲାଭ କରିଛନ୍ତି । କିନ୍ତୁ ସେହି ମାସରେ ଆଠଦିନ ପୂର୍ବରୁ କେନ୍ଦୁଝର ସଂଗ୍ରାମୀମାନେ ମେ ୧୬ ତାରିଖରେ ବନ୍ଦୀ-ହୋଇ ନିର୍ଯ୍ୟାତନା ଲାଭ କରୁଥିଲେ ମଧ୍ୟ ତାଙ୍କର ହିସାବ ଇତିହାସରେ ନାହିଁ । ଏହି ଜେଲଦଣ୍ଡ ପ୍ରଦାନ ସମ୍ବାଦ ପାଇ ସେତେବେଳେ 'ସମାଜ' ଖବରକାଗଜରେ ନିଖିଳ ଭାରତ କଂଗ୍ରେସ କମିଟି ପ୍ରତିବାଦ ପ୍ରସ୍ତାବ ମଧ୍ୟ ଗ୍ରହଣ କରିଥିଲେ ।

୧୯୩୦ ମସିହାରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଓଡ଼ିଶାର ଇଞ୍ଚୁଡ଼ିଠାରେ ସତ୍ୟାଗ୍ରହୀମାନେ ଲୁଣମରା କାମରେ ଯୋଗଦେବାକୁ ଚାରିଆଡ଼ୁ ଆସି ଜମା ହେଲେ । କେନ୍ଦୁଝର ଜିଲ୍ଲାର ସ୍ୱାମ୍ ପାଟଣା ଗାଆଁରୁ ଭାନୁ ଚରଣ ଦାଶ ଏହି ଲବଣ ସତ୍ୟାଗ୍ରହରେ ଯୋଗଦେଇ ବନ୍ଦୀ ହେଲେ । ବେତ୍ରାଘାତରେ ତାଙ୍କର ହାତ ଫାଟିଯିବାରୁ ସେ ପୋଲିସଙ୍କୁ ରକ୍ତବୋଳା ହାତ ଦେଖାଇ ନିଜର ବାହାଦୁରୀ ପ୍ରଦର୍ଶନ କରିଥିଲେ । ପରେ ସେ ଗୁପ୍ତରେ କଂଗ୍ରେସ ବାର୍ତ୍ତା ପହଞ୍ଚାଉଥିବା ଅପରାଧରେ ଦୁଇଥର ଜେଲଦଣ୍ଡ ଓ ନିର୍ଯ୍ୟାତନା ପାଇଥିଲେ । ତାଙ୍କର ସାହସିକ ସଂଗ୍ରାମ କାହାଣୀ ଯେଭଳି ରୋମାଞ୍ଚକର, ସେହିଭଳି ପ୍ରେରଣା-ଦାୟକ ଥିଲା ।

ବିଦେଶୀ-ବସ୍ତ୍ର ବର୍ଜନ ଆନ୍ଦୋଳନ ଚାଲିଥିଲାବେଳେ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଏହି ଆନ୍ଦୋଳନ ଭଦ୍ରକ ଅଞ୍ଚଳରେ ଚହଳ ସୃଷ୍ଟି କରିଥାଏ । କେନ୍ଦୁଝରର ଓରାଳି ଗାଆଁର ସଂଗ୍ରାମୀ ଶ୍ରୀରାମ ପଟ୍ଟନାୟକ, ଗୋଲୋକ ପଟ୍ଟନାୟକ, ରାହାସବିହାରୀ ମହାନ୍ତିଙ୍କ ସହିତ ବୀରଗୋବିନ୍ଦପୁର ଗାଆଁର ମାର୍କଣ୍ଡ ପ୍ରସାଦ ମହାପାତ୍ର ମିଶି ଭାରତୀୟ ଖଦଡ଼ବୋର୍ଡରେ କାର୍ଯ୍ୟ କଲେ ।

୧୯୩୨ ମସିହା ବେଳକୁ ଖଦଡ଼ବୋର୍ଡର କର୍ମଚାରୀମାନେ କଂଗ୍ରେସ ଲୋକଙ୍କ ସହିତ ମିଶି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସହଯୋଗ କରୁଛନ୍ତି ବୋଲି ଇଂରେଜ ସରକାର ସନ୍ଦେହ କରୁଥିଲେ । ତେଣୁ ମାର୍କଣ୍ଡ ପ୍ରସାଦ ମହାପାତ୍ର ଦୋଷୀ ସାବ୍ୟସ୍ତ ହୋଇ ଛଅ ମାସ ଜେଲଦଣ୍ଡରେ ଦଣ୍ଡିତ ହେଲେ । ତାଙ୍କର କୌଣସି କଥାକୁ ଶୁଣାଗଲା ନାହିଁ । ତେଣୁ ସେ ଭଦ୍ରକ, କଟକ ଓ ଫୁଲଓ୍ୱାରୀ କ୍ୟାମ୍ପରେ ମାସେ ଲେଖା ଜେଲଦଣ୍ଡ ଭୋଗିଲେ ।

୧୯୩୩ ମସିହାରେ ଜେଲରୁ ମୁକ୍ତ ପାଇ ଫେରୁଥିବା ବାଟରେ ପୁଣି ପୋଲିସ୍ ତାଙ୍କୁ ଥାନା ହାଜତକୁ ନେଇଯାଇଥିଲେ । ପରବର୍ତ୍ତୀ ଜୀବନ ସେ ଜଣେ ଡାକବଙ୍ଗଳାର କର୍ମଚାରୀ ଭାବେ ବିତାଇଥିଲେ । ସମ୍ପ୍ରତି ସେ ସାର ଗୋବିନ୍ଦପୁର ଗ୍ରାମରେ ୯୩ ବର୍ଷରେ ପଦାର୍ପଣ କରିଛନ୍ତି ।

୧୯୩୮ ମସିହାରେ ଜଗବନ୍ଧୁ ଚକ୍ରବର୍ତ୍ତୀଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଆନ୍ଦୋଳନ କେନ୍ଦୁଝରର ଉନୋଃତିଯାକ ସବ୍‌ଡିଭିଜନରେ ପ୍ରବଳ ଆକାର ଧାରଣ କଲା । ପ୍ରଜାମଣ୍ଡଳ ଆନ୍ଦୋଳନ ପରୋକ୍ଷ ଭାବରେ ସ୍ୱାଧୀନତା ଆନ୍ଦୋଳନର କାର୍ଯ୍ୟ କରୁଥିବାରୁ ବିଭିନ୍ନ ଅଞ୍ଚଳରୁ ବିଦ୍ରୋହୀ ସଂଗ୍ରାମୀମାନେ ଏଥିରେ ସାମିଲ ହେଉଥିଲେ । ଗିବ୍‌ସନ୍ ହାଇସ୍କୁଲର କାଙ୍ଗାଳି ଚରଣ ପଣ୍ଡା ଓ ଭିକାରି ଚରଣ ପଣ୍ଡା ଦୁଇଜଣ ଗ୍ରେପ୍ତ ବନ୍ଦୀ ହୋଇଥିଲେ । ଭିକାରି ଚରଣଙ୍କ ଜ୍ୱାଳାମୟୀ ସଙ୍ଗୀତ ଗାନରେ ଜନତା ଅଧିକ ଆକୃଷ୍ଟ ହେଉଥିଲେ । ଏହି ଆନ୍ଦୋଳନରେ ଯୋଗ ଦେଇଥିବା ଅପରାଧରେ କେନ୍ଦୁଝର ଜିଲାର ସଂଗ୍ରାମୀ ଜଗବନ୍ଧୁ ଚକ୍ରବର୍ତ୍ତୀଙ୍କୁ ଛଅ ବର୍ଷ ଏବଂ ରଙ୍ଗାଧର ଦାସ, ପୂର୍ଣ୍ଣଚନ୍ଦ୍ର ମିଶ୍ର, ଭିକାରି ଚରଣ ପଣ୍ଡା, କାଙ୍ଗାଳି ଚରଣ ପଣ୍ଡା, ବଳରାମ ଦାସ, ଜାର୍ଦ୍ଦିନ ବିହାରି ମହାନ୍ତି, ନାରାୟଣ ଚନ୍ଦ ଓ ହରେକୃଷ୍ଣ ମହାନ୍ତିଙ୍କୁ ଦୁଇବର୍ଷ ଲେଖାଁ ଜେଲଦଣ୍ଡ ପ୍ରଦାନ କରାଗଲା ।

ସେହିପରି ସାଉଁକୁଳର ସଂକର୍ଷଣ ପଟ୍ଟନାୟକ, ଚମ୍ପୁଆର ରାଜବଲ୍ଲଭ ମିଶ୍ର, ଜ୍ୟୋତିପୁରର ବନମାଳି ପାତ୍ର, ହରିଚନ୍ଦନପୁରର ଲକ୍ଷ୍ମୀଧର ବିଦ୍ୟାଧର, ବରକଲାର କ୍ଷେତ୍ରମୋହନ ନାୟକ, ଟାଙ୍ଗରପଡ଼ାର ମାଗୁଣି ବେହେରା, କେନ୍ଦୁଝରଗଡ଼ର ରତ୍ନାକର ବଡ଼ରାଟଙ୍କ ପରି ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀମାନେ ସମଗ୍ର କେନ୍ଦୁଝରରେ ଆନ୍ଦୋଳନକୁ ତୀବ୍ରତର କରିପାରିଥିଲେ । ଫଳରେ ପ୍ରଜାମାନଙ୍କ ମନରେ ସ୍ୱାଧୀନତାର ବୀଜ ଅଙ୍କୁରିତ ହୋଇଥିଲା । ରାଜତନ୍ତ୍ର ଲୋପ କରିବା ଷଡ଼ଯନ୍ତ୍ରରେ ଲିପ୍ତ ଥିବାରୁ ଏମାନେ ଇଂରେଜ ସରକାର ତଥା ତତ୍କାଳୀନ ରାଜାଙ୍କର କୋପ-ଦୃଷ୍ଟିରେ ପଡ଼ିଥିଲେ ।

କେନ୍ଦୁଝରର ମୁଖ୍ୟ ସଂଗ୍ରାମୀ ଜଗବନ୍ଧୁ ଚକ୍ରବର୍ତ୍ତୀ ଜେଲରେ ଥିବା କାରଣରୁ ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନର ପ୍ରଭାବ ଏ ଅଞ୍ଚଳରେ ବ୍ୟାପକ ହୋଇ-ପାରିନଥିଲା । ଗିବ୍‌ସନ୍ ହାଇସ୍କୁଲରେ ଏହି ଆନ୍ଦୋଳନର ସୂତ୍ରପାତ ଘଟିବା ସମୟରେ ପୋଲିସ ଏହାକୁ ଦୃଢ଼ଭାବେ ଦବେଇ ରଖିଦେଲେ ।

୧୯୪୬-୪୭ ମସିହାରେ ପ୍ରଜାମଣ୍ଡଳ ଆନ୍ଦୋଳନ ପୁଣି ସଙ୍ଗଠିତ ହୋଇଥିଲା । ଆନନ୍ଦପୁର ବଡ଼ଦାଣ୍ଡରେ ଗୋଟିଏ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇ

ସାମନ୍ତବାଦୀ ଶୋଷଣର ତୀବ୍ର ପ୍ରତିବାଦ କରାଗଲା । ଏହାକୁ ବଳପୂର୍ବକ ବନ୍ଦ କରିବା ପାଇଁ ଆଖିବୁଜା ଗିରଫ, ନେତାମାନଙ୍କର ଗୋପନଚଳନ, ସମ୍ପତ୍ତି ବାଜ୍ୟାପ୍ତି, ଭସ୍ମୀଭୂତ ଏବଂ ଅମାନୁଷିକ ଅତ୍ୟାଚାର ଚାଲିଲା । ଏହାଦ୍ୱାରା ଫଳ ଓଲଟା ହେଲା । ସରକାରଙ୍କ କଠୋର ନୀତିରେ ପ୍ରଜାମଣ୍ଡଳର ଆନ୍ଦୋଳନ ଅଧିକ ବ୍ୟାପକ ହୋଇଥିଲା । ଶେଷରେ ପ୍ରଜାମଣ୍ଡଳର ନେତାମାନେ ହିଁ ଜୟଲାଭ କଲେ । ରାଜାମାନେ କ୍ଷମତାଚ୍ୟୁତ ହେଲେ ଏବଂ ଦେଶୀୟ ରାଜ୍ୟସମୂହ ବୃହତ୍ତର ଭାରତୀୟ ସାଧାରଣତନ୍ତ୍ର ସହିତ ସାମିଲ ହୋଇ ପ୍ରଜାପ୍ରତିନିଧିମାନଙ୍କ ଦ୍ୱାରା ଶାସିତ ହେଲା ।

ଏହି ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ କେନ୍ଦୁଝର ଇଷ୍ଟେଟ୍‌ର ନେତୃତ୍ୱ ନେଇଥିଲେ—କାଙ୍ଗାଳି ଚରଣ ପଣ୍ଡା, ବଂଶୀଧର ପ୍ରଧାନ, ହରେକୃଷ୍ଣ ମହାନ୍ତି, ନାରାୟଣ ଚନ୍ଦ, ରଙ୍ଗାଧର ଦାସ, ରାଜବଲ୍ଲଭ ମିଶ୍ର, ଗୌରଚନ୍ଦ୍ର ଭଞ୍ଜ, ଜଗବନ୍ଧୁ ଚକ୍ରବର୍ତ୍ତୀ, ସ୍ୱପ୍ନେଶ୍ୱର ବେହେରା, ଗୋଲୋକବିହାରୀ ପଟ୍ଟନାୟକ, ଭୀମସେନ ରାଉତ, ରଙ୍ଗାଧର ବେହେରା, କାଳନ୍ଦୀଚରଣ ବେହେରା, କାର୍ତ୍ତିକବିହାରୀ ପଟ୍ଟନାୟକ, ରାହାସବିହାରୀ ମହାନ୍ତି, ଉମାକାନ୍ତ ଚନ୍ଦ, ଉପେନ୍ଦ୍ର ନାଥ ଜେନା, କ୍ଷମାକର ପାଢ଼ୀ, ମଧୁସୂଦନ ମିଶ୍ର, କରୁଣାକର ଗିରି, ବଂଶୀଧର ପଟ୍ଟନାୟକ, ଅର୍ଜୁନ ମହାନ୍ତି ଓ ଆହୁରି ଅନେକ ।

ଏହି ଆନ୍ଦୋଳନର ଅଂଶସ୍ୱରୂପ ଚମ୍ପୁଆଠାରେ ଏକ ପ୍ରଜାମଣ୍ଡଳ ଗଠିତ ହୋଇଥିଲା । ଚାଗ୍ରାମୀ ଯୁବକ ବଂଶୀଧର ପ୍ରଧାନ ଏହାର ନେତୃତ୍ୱ ନେଇ କାଳିକା ପ୍ରସାଦ, ଚମ୍ପୁଆ, ଚମକପୁର, କ୍ୟୋଝପୁର ଦଣ୍ଡପାଟରେ ଏହାକୁ ବ୍ୟାପକ କରିଥିଲେ । ଅଡ଼ଙ୍ଗପାଳ ମୌଜାର ୧୮ ଜଣ ସ୍ୱେଚ୍ଛାସେବୀ ଏଥିରେ ଯୋଗଦେଇ ଆଦିବାସୀମାନଙ୍କ ମନରେ ଉତ୍ସାହ ଜାଗ୍ରତ କରିଥିଲେ ।

ଆନ୍ଦୋଳନର ଅନ୍ୟତମ ପ୍ରମୁଖ ନେତା ପଦ୍ମଚରଣ ନାୟକ, ଶ୍ରୀକର ନାୟକ, ଅର୍ଜୁନ ମହାନ୍ତି ଓ ହରେକୃଷ୍ଣ ମହାନ୍ତି ରାଇଁବସାଠାରେ ଅନୁଷ୍ଠିତ ପ୍ରଜାମଣ୍ଡଳ ସଭାରେ ଯୋଗଦେଇ ସେଠାରେ ଗୃହୀତ ପ୍ରସ୍ତାବକୁ ଚମ୍ପୁଆ ଅଞ୍ଚଳରେ କାର୍ଯ୍ୟକାରୀ କରିଥିବା ଅପରାଧରେ ଦଣ୍ଡିତ ହୋଇଥିଲେ । ଶ୍ରୀକର ନାୟକଙ୍କୁ ଗୁଳିକରି ମାରିଦିଆଗଲା । ପଦ୍ମଚରଣ ନାୟକ ଜେଲଦଣ୍ଡ ଭୋଗକଲେ । ଅନ୍ୟମାନଙ୍କୁ ବିଭିନ୍ନପ୍ରକାର ଅତ୍ୟାଚାର କରି ଅମାନୁଷିକ ବ୍ୟବହାର ପ୍ରଦର୍ଶନ କରାଗଲା । ବଣ-ଜଙ୍ଗଲ ଘେରା କେନ୍ଦୁଝର ଇଷ୍ଟେଟ୍‌ର ଅନ୍ୟାୟ-ଅତ୍ୟାଚାର କାହାଣୀ ଏତେ ସହଜରେ ଅନ୍ୟତ୍ର ପ୍ରତିଧ୍ୱନିତ ହୋଇ ନ ପାରିବାରୁ କେବଳ ଚାଗ୍ରାମୀମାନେ ହିଁ ସେ କଷ୍ଟକୁ ଅନୁଭବ କରିଥିଲେ ।

ଭାରତର ସ୍ୱାଧୀନତା ସଂଗ୍ରାମ ରୂପକ ସେତୁବନ୍ଧ ନିର୍ମାଣ କାର୍ଯ୍ୟରେ କେନ୍ଦୁଝର-ବାସୀଙ୍କ ଅବଦାନ ଯଦିଓ ଗୁଣ୍ଡୁଚି ମୂଷାର ଭୂମିକା ଗ୍ରହଣ କରିଛି, ତଥାପି ଏହା ଉପେକ୍ଷଣୀୟ ନୁହେଁ । ବଣ ଜଙ୍ଗଲ ଘେରା ଆଦିବାସୀ ଅଞ୍ଚଳର ଜନସାଧାରଣ ଯେ ସ୍ୱାଧୀନଚେତା ଥିଲେ ଏବଂ ଶାନ୍ତିପାଇଁ ସଂଗ୍ରାମର ଆବଶ୍ୟକତାକୁ ସେମାନେ ମର୍ମେ ମର୍ମେ ହୃଦୟଙ୍ଗମ କରିଥିଲେ, ଏ କଥାକୁ ସେମାନେ ତିନୋଟି ଗୁରୁତ୍ୱପୂର୍ଣ୍ଣ ସଂଗ୍ରାମ ମାଧ୍ୟମରେ ପ୍ରମାଣ କରି ଦେଇଯାଇଛନ୍ତି ।

ବି. ଦ୍ର.—(ଲେଖକ ଡକ୍ଟର ନାୟକଙ୍କର ଏହି ପ୍ରବନ୍ଧଟି 'ଉତ୍କଳ ପ୍ରସଙ୍ଗ' ଜାନୁୟାରି-୯୭ ସଂଖ୍ୟାରେ ମଧ୍ୟ ପ୍ରକାଶିତ ।)



## ଶେଷକଥା

ମୋର ପ୍ରିୟ ପାଠକ ତଥା ଗବେଷକମାନଙ୍କୁ ଅନୁରୋଧ, ଏହି ପୁସ୍ତକରେ ଯଦି କିଛି ତ୍ରୁଟି ତାଙ୍କ ଦୃଷ୍ଟିକୁ ଆସେ; ତେବେ ଦୟାକରି ମୋ ଠିକଣାରେ ପତ୍ରଦ୍ୱାରା ଜଣାଇବେ । ପରବର୍ତ୍ତୀ ସଂସ୍କରଣରେ ତାହା ସଂଶୋଧିତ ହୋଇପାରିବ ।

ଲେଖକ

ଠିକଣା :

ଡକ୍ଟର କୃଷ୍ଣଚନ୍ଦ୍ର ନାୟକ

ଆକାଶବାଣୀ, ରାଉରକେଲା-୪୨

ଫୋନ୍-୫୪୫୭୧୩

# ଲେଖକ ପରିଚୟ



ଲେଖକ ଡକ୍ଟର କୃତ୍ତିବାସ ନାୟକ ଜଣେ ସୃଜନଶୀଳ ସ୍ରଷ୍ଟା ତଥା ଗବେଷକ ଭାବେ ସୁପରିଚିତ । ଏ ଯାବତ୍ ତାଙ୍କର ୫୦ଟି ପୁସ୍ତକ ପ୍ରକାଶିତ । ଦୁଇଖଣ୍ଡ ଗଳ୍ପ-ସଂକଳନ 'ସଦାନନ୍ଦବାବୁଙ୍କ ସଂସାର' ଓ 'ଶ୍ରୀମା ହେବ' ସବୁଶ୍ରେଣୀର ପାଠକଙ୍କ ନିକଟରେ ଲୋକପ୍ରିୟତା ହାସଲ କରିପାରିଛି । 'ବଣଭୋଜି' ପୁସ୍ତକଟି ସର୍ବଭାରତୀୟ ପ୍ରତିଯୋଗିତାରେ ଶ୍ରେଷ୍ଠ ବିବେଚିତ ହୋଇ ଜାତୀୟ ପୁରସ୍କାର ଲାଭ କରିଛି । ଶିଶୁସାହିତ୍ୟର ଗଳ୍ପ ଉପରେ ସେ ଗବେଷଣା କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି.(କଳାଭୂଷଣ) ଲାଭ କରିଛନ୍ତି । ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ସେ ଡି.ଲିଟ୍ (ସାହିତ୍ୟଭୂଷଣ) କାର୍ଯ୍ୟ କରୁଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ସେ ଜଣେ ଗବେଷକ, ମାର୍ଗଦର୍ଶକ (ଗାଇଡ୍) ଭାବେ ମନୋନୀତ ହୋଇଛନ୍ତି । ତାଙ୍କଦ୍ୱାରା ଶିଶୁନୟନ, ଆମେ ଶିଶୁ ଓ ଶିଶୁରାଇଜ ପତ୍ରିକା କୋରାପୁଟ ଜିଲ୍ଲାରୁ ପ୍ରକାଶିତ ହେଉଥିଲା । ସମ୍ପ୍ରତି ସେ ଆକାଶବାଣୀର ଜଣେ ବରିଷ୍ଠ କାର୍ଯ୍ୟକ୍ରମ ନିଷ୍ପାଦକ ଭାବେ କାର୍ଯ୍ୟରତ । 'ଅରୁଣ-ତରୁଣ' ସଂଗଠନ କର୍ମଶାଳା ମାଧ୍ୟମରେ ସେ ପିଲାଙ୍କୁ ସୃଜନଶୀଳ ସାହିତ୍ୟ ସୃଷ୍ଟି ଏବଂ ନିର୍ଭୁଲ ରଚନା ସମ୍ପର୍କୀୟ ଶିକ୍ଷା ଦାନ କରୁଛନ୍ତି । ନିକଟରେ ତାଙ୍କର କୃତି ଓ କୃତିତ୍ୱକୁ ନେଇ ନିଖିଳ ଉତ୍କଳ ଶିଶୁ-ସାହିତ୍ୟ ସଂସଦ 'ପ୍ରେରଣା' ନାମକ ଅଭିନନ୍ଦନିକା ପ୍ରକାଶ କରିଛନ୍ତି ।